# କିଏ ବେଶୀ ଭାରୀ ?

( ଗଣିତ ଉପରେ ଆଧାରିତ ପିଲାଙ୍କ ମନଲାଖି ବିଜ୍ଞାନ କାହାଣୀ )

ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ବିଦ୍ୟାପୁରୀ

# ସୂଚୀ




ପ୍ରଥମ ପ୍ରକାଶ ୧୯୮୮
ଦ୍ୱିତୀୟ ମୁଦ୍ରଣ ୧୯୮୯
ତୃତୀୟ ମୁଦ୍ରଣ ୧୯୯୦

ପ୍ରକାଶକ
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ମୁଦ୍ରଣ
ଗୋ
ଆଲ ... ଟକ ୭୫୩୦୦୨

ମୂଲ୍ୟ—




॥ ଏକ ॥

# ଲୋଭୀ ମହାଜନ ବୁଦ୍ଧି ଶିଖିଲା

କଲିକତାର ଲୋଅର ଚିତ୍ପୁର ରୋଡ଼ ଆଉ ଅପର ଚିତ୍ପୁର ରୋଡ଼ ଆଉକୁ ଗଲାବେଳକୁ ମହାତ୍ମାଗାନ୍ଧୀ ରୋଡ଼ ଠିକ୍ ପାରହେବା ପରେ ଗୋଟିଏ ବିରାଟ ମସ୍‌ଜିଦ୍ ପଡ଼ିବ । ତା'ଠାରୁ ଦୁଇଟି ଘର ଛାଡ଼ି ଗୋଟିଏ ବଡ଼ ଭଙ୍ଗା କୋଠାଘର ଅଛି । ସେହି କୋଠାଘରଟି ଆଜକୁ ପ୍ରାୟ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ହେବ ଭାଙ୍ଗିଗଲାଣି । ସେହି ଘରର ବର୍ତ୍ତମାନ ପ୍ରକୃତ ମାଲିକ୍ କିଏ କହିବା କଷ୍ଟକର । ସେହି ଜାଗାଟିକୁ ଖରିଦ୍ ବିକ୍ରୀ କରିଆରେ କଲିକତାର କେତେ ପରିବାର ଯେ ମାଲିମୋକଦ୍ଦମାରେ ପଡ଼ି ସର୍ବସ୍ୱାନ୍ତ ହେଲେଣି, ତାର କଳନା ନାହିଁ ।

ଲୋକେ କହନ୍ତି, ଆଜ ସେଠି ଯେଉଁ ପ୍ରକାଣ୍ଡ ଭଙ୍ଗା ପ୍ରାସାଦ ଠିଆ ହୋଇଛି, ସେହି ପ୍ରାସାଦର ମାଲିକ ଥିଲେ ଆଜକୁ ପ୍ରାୟ ନବେ ବର୍ଷ ତଳେ ଜଣେ ଅତି ଧନୀ ଓ ବଡ଼ ବ୍ୟବସାୟୀ । ଟଙ୍କା କରଜ ଦେବାଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ରପ୍ତାନି ଆମଦାନି ବାଣିଜ୍ୟ ତାଙ୍କର ଥିଲା । କଥାରେ ଅଛି, ଧନ ଯା'ର ଲୋଭ ତା'ର । ସେଠ୍ ଥିଲେ ଅତ୍ୟଧିକ ଲୋଭୀ । କରଜ ଦେଲେ ସୁଧ ନିଅନ୍ତି ଚଢ଼ା, ବ୍ୟବସାୟ କଲେ ଖୁବ୍ ଲାଭ ରଖି ଜିନିଷ ବିକନ୍ତି । ସେଠ୍‌ଙ୍କର ଗଦି ଓ ବ୍ୟବସାୟ କେନ୍ଦ୍ର ଥିଲା କଲିକତାର ବଡ଼ ବଜାରରେ, ଆଜିକାଲି ଯାହାକୁ କୁହାଯାଉଛି ମହାତ୍ମାଗାନ୍ଧୀ ରୋଡ଼ ।

ଦିନେ ସେଠ୍ ଗଦିରେ ବସିଥାନ୍ତି, ଜଣେ ବିଦେଶ ସୁନା ବ୍ୟବସାୟୀ ଆସି ତାଙ୍କ-ଠାରେ ପହଞ୍ଚିଲେ । ବ୍ୟବସାୟୀ ଜଣକ ଆସିଥାନ୍ତି ବମ୍ବେରୁ । ସେ ବିଲାତରୁ ଗିନିସୁନା ଆଣି ବ୍ୟବସାୟ କରନ୍ତି । ସେ ଯୁଗରେ ସୁନା ଭରି ମାତ୍ର କୋଡ଼ିଏ ଟଙ୍କା । ବ୍ୟବସାୟୀ ଜଣକ

ସେଠ୍‌ଙ୍କୁ ପ୍ରସ୍ତାବ ଦେଲେ ଯେ ସେ ସେଠ୍‌ଙ୍କୁ ପ୍ରତିଦିନ ସକାଳେ ୫୦୦୦ ଭରି ଖାଣ୍ଟି ସୁନା ଦେବେ, ସେଠ୍ ତାଙ୍କୁ ତାର ମୂଲ୍ୟସ୍ୱରୂପ କ୍ରମବର୍ଦ୍ଧିଷ୍ଣୁ ହାରରେ ତମ୍ବା ପଇସା ଦେବେ । ପ୍ରତିଦିନ ସକାଳୁ ସେ ପାଞ୍ଚ-ହଜାର ଭରି ଲେଖାଏଁ ସୁନା ସେଠ୍‌ଙ୍କୁ ପଇଠ ଦେଉଥିବେ, ସେଠ୍ ତା ବଦଳରେ ଆଗଦିନ ଯେତିକି ପଇସା ଦେଇଥିବେ, ତାର ମାତ୍ର ଦୁଇଗୁଣ ପଇସା ସେହିଦିନ ଦେବେ । ଏହି ଦେଣ ନେଣ ଠିକ୍ ମାସେ ପର୍ଯ୍ୟନ୍ତ ଚାଲିବ । ପ୍ରତିଦିନ ସେଠ୍ ବ୍ୟବସାୟୀ ଠାରୁ ୫୦୦୦ ଭରି ସୁନା ଓଜନ କରି ନେବେ ଓ ପ୍ରତିବଦଳରେ, ଦେବେ, ପ୍ରଥମଦିନ ପଇସାଟିଏ, ଦ୍ୱିତୀୟ ଦିନ ଦୁଇ ପଇସା, ତୃତୀୟ ଦିନ ଚାରି ପଇସା, ଚତୁର୍ଥ ଦିନ ଆଠ ପଇସା, ପଞ୍ଚମ ଦିନ ଷୋଳ ପଇସା—ଏହିଭଳି କ୍ରମବର୍ଦ୍ଧିଷ୍ଣୁ ଭାବରେ ମାସେ ବା ତିରିଶ ଦିନ ପର୍ଯ୍ୟନ୍ତ ।



[ସେଠ୍‌ଙ୍କୁ ସୁନା ବ୍ୟବସାୟୀ ନିଜ ପ୍ରସ୍ତାବ ଦେଉଛନ୍ତି]

ସୁନା ବ୍ୟବସାୟୀର ଏଭଳି ପ୍ରସ୍ତାବ ଶୁଣି ସେଠ୍ ପ୍ରଥମେ ବିଶ୍ୱାସ କରିପାରିଲେନି । ସେ ଭାବିଲେ ସୁନାବେପାରୀ ସମ୍ଭବତଃ ଏକ ଠକ ବ୍ୟବସାୟୀ । ପ୍ରକୃତରେ ଖାଣ୍ଟି ସୁନା ନ ଦେଇ ନକଲି ସୁନା ଦେଇ ଠକି ଦେଇପାରେ । କିନ୍ତୁ ପରମୁହୂର୍ତ୍ତରେ ଭାବିଲେ, ସେ ଠକିବ କଅଣ ? ତାଙ୍କଠାରୁ ତ ପ୍ରଥମ ଦିନ ମାତ୍ର ତମ୍ବା ପଇସାଟିଏ ନେବ, ଦେବ ପାଞ୍ଚହଜାର ଭରି ସୁନା । ଏହା ଖାଣ୍ଟି ସୁନା ନ ହୋଇ ଯଦି ଖରାପ ସୁନା ହୁଏ, ତେବେ ତାର ମୂଲ୍ୟ ପଇସାକ ଠାରୁ ତ ନିଶ୍ଚୟ ବେଶୀ ହେବ । ପାଞ୍ଚହଜାର ଭରି ବାଲି, କି ଗୋଡ଼, କି ମାଟି ଦେଲେ ବି ତା'ର ମୂଲ୍ୟ ତ କେବେ ପଇସାକଠାରୁ କମ୍ ହେବନି । ଯଦି ଏମିତି ଏକ ସୁଯୋଗ ମିଳୁଛି, ତେବେ ସେ ସୁଯୋଗ ନ ନେବେ କାହିଁକି ? ଏଭଳି ଏକ ସୁଯୋଗ ଭାଗ୍ୟରେ ଥିଲେ

ମିଳେ । ସେଠ୍ ମନେ ମନେ ଭାରି ଖୁସି । ନିଜକୁ ଏକ କପାଳିଆ ବୋଲି ଭାବୁଥାନ୍ତି । ଲକ୍ଷ୍ମୀଙ୍କର ତାଙ୍କ ପ୍ରତି କି ଅପାର ଦୟା ସତେ ! ନ ହେଲେ ତାଙ୍କ ଭାଗ୍ୟକୁ ଏ ସୁନାବେପାରୀ ଜୁଟିଥାନ୍ତା କୁଆଡ଼ୁ ?

ସୁନାବେପାରୀଙ୍କ କଥାରେ ସେଠ୍ ରାଜି ହୋଇଗଲେ । ନ ହେବେ ବା କାହିଁକି ? କଚେରୀକୁ ଯାଇ ଏକ ଚୁକ୍ତିପତ୍ର ରେଜେଷ୍ଟ୍ରି କରାଇ ନେଲେ । ସେଠ୍‌ଙ୍କ ମନ ଆନନ୍ଦରେ ନାଚୁଥାଏ । ଆସନ୍ତା କାଲି ସକାଳୁ ସୁନା ବ୍ୟବସାୟୀ ସୁନା ଇଟା ଧରି ଆସି ପହଞ୍ଚିବ ।ସେଦିନ ରାତିରେ ସେଠ୍‌ଙ୍କ ଆଖିକୁ ନିଦ ନାହିଁ । କି ସୌଭାଗ୍ୟ ତାଙ୍କର ! ପ୍ରତିଦିନ ସକାଳୁ ଲକ୍ଷେ ଲକ୍ଷେ ଟଙ୍କାର ସୁନା, ଜାଣ ବିନା ପଇସାରେ ଆଣି ଗୋଡ଼ ପାଖରେ ଅଜାଡ଼ି ଦେଇ ଯାଉଛି । ତାଙ୍କ ସୌଭାଗ୍ୟ ଦେଖି କାଳେ କିଏ ତାଙ୍କୁ ହିଂସା କରିବ, ସେଠ୍ ସବୁ ଗୋପନ ରଖିଥାନ୍ତି ।

ତହିଁ ପରଦିନ, ସେଠ୍ ସଅଳ ସଅଳ ଗଦିରେ ଯାଇ ହାଜର । ମନ ଆନନ୍ଦରେ ନାଚୁଥାଏ । ସେଠ୍ ସୁନା ବେପାରୀକୁ ଅନାଇ ବସିଥାନ୍ତି । କାନ୍ଥ ଘଣ୍ଟାରେ ଠିକ୍ ନଅଟା ବାଜିଲାବେଳକୁ ସୁନା ବ୍ୟବସାୟୀ ଗାଡ଼ିରେ ସୁନାତକ ନେଇ ଗଦିରେ ଆସି ହାଜର । ଗୋଟିଏ ବଡ଼ ସୁଟ୍‌କେଶରେ ସୁନାଇଟା ଭରି । ବ୍ୟବସାୟୀ ଜଣକ ଯେତେବେଳେ ସୁଟ୍‌କେଶଟିକୁ ଖୋଲି ସେଠ୍‌ଙ୍କ ଆଗରେ ଥୋଇ ଦେଲେ, ସେଠ୍‌ଙ୍କ ଆଖି ଝଲସି ଯାଇଗଲା, ତାଙ୍କ ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇଯିବା ଉପରେ । ସଙ୍ଗେ ସଙ୍ଗେ ସୁନାଇଟାଗୁଡ଼ିକୁ ନେଇ ପରୀକ୍ଷା କରିବାରେ ଲାଗିଗଲେ । ପୂରାପୂରି ଖାଣ୍ଟି ସୁନା, ଟିକିଏ ବି ଭେଜାଲ ନାହିଁ, ଓଜନ ମଧ୍ୟ ଠିକ୍ । ସୁନାତକ ନେଇ ଲୁହା ଆଲମାରୀରେ ଥୋଇ ଚାବି ଦେଲେ । ଡ୍ରୟରରୁ ତମ୍ବା ପଇସାଟିଏ କାଢ଼ି ବେପାରୀ ହାତକୁ ବଢ଼ାଇ ଦେଲେ । ବେପାରୀ ପଇସାଟି ନେଇ ଅତି ଖୁସିହୋଇ ବାହାରି ଗଲା । ପରଦିନ ଠିକ୍ ଏତିକବେଳକୁ ସୁନା ନେଇ ଆସି ପହଞ୍ଚିବ ବୋଲି କହିଦେଇଗଲା ।



[ସୁନା ବେପାରୀ ସୁଟ୍‌କେଶରେ ସୁନା ଧରି ଆସୁଛି]

ତହିଁ ପରଦିନ ବେପାରୀ ଠିକ୍ ସେତକ ସୁନା ନେଇ ଆସି ହାଜର । ସେଠ୍ ତା'ଠାରୁ ସୁନାତକ ନେଇ ଏଥର ମାତ୍ର ଦୁଇଟି ତମ୍ବା ପଇସା ଦେଇ ବିଦାୟ କରିଦେଲେ ।

ତୃତୀୟଦିନ ବେପାରୀ ସେହିଭଳି ପାଞ୍ଚହଜାର ଭରି ସୁନା ନେଇଆସି ପହଞ୍ଚିଲା । ସେଠ୍‌ଙ୍କଠାରୁ ମାତ୍ର ଚାରିଟି ତମ୍ବାପଇସା ନେଇ ଚାଲିଗଲା । ଧନକୁବେର ସେଠ୍‌ଙ୍କ ଆନନ୍ଦ କହିଲେ ନ ସରେ । ଏତେ ସୁନାଇଟା ରଖିବେ କେଉଁଠି ? ବନ୍ଧୁକଧାରୀ ପ୍ରହରୀ ଆଣି ଘର ଚାରିପାଖରେ ଜଗାଇ ଦେଲେ ।

ବେପାରୀ ପ୍ରତିଦିନ ଆସେ, ନିର୍ଦ୍ଦିଷ୍ଟ ପରିମାଣର ସୁନା ଦେଇ କେତୋଟି ତମ୍ବା ପଇସା ନେଇ ଚାଲିଯାଏ । ଅବଶ୍ୟ ପ୍ରତିଦିନ ବେପାରୀର ପଇସା ପରିମାଣ ବଢ଼ି ବଢ଼ି ଚାଲେ । ଯେଉଁଦିନ ସତର ଦିନ ହେଲା, ସେଦିନ ସେଠ୍ ବେପାରୀଠାରୁ ପାଇଲେ ଲକ୍ଷେ ଟଙ୍କାର ସୁନା, କିନ୍ତୁ ତାକୁ ଦେଲେ ମାତ୍ର ୧୦୨୪ ଟଙ୍କା । ତେଇଶ ଦିନ ହେଲାବେଳକୁ ସେଠ୍ ବେପାରୀଠାରୁ ପାଇଲେ ଲକ୍ଷେ ଟଙ୍କାର ସୁନା, କିନ୍ତୁ ଦେଲେ ୬୫,୫୩୬ ଟଙ୍କା । ତହିଁ ପରଦିନ ସେଠ୍‌ଙ୍କୁ ଦେବାକୁ ପଡ଼ିଲା ଏକଲକ୍ଷ ଏକତିରିଶ ହଜାର ବାସ୍ତରୀ ଟଙ୍କା, କିନ୍ତୁ ସେଠ୍ ବେପାରୀ-ଠାରୁ ପାଇଲେ ମାତ୍ର ଲକ୍ଷେ ଟଙ୍କାର ସୁନା । ସେହିଦିନ ସେଠ୍‌ଙ୍କର ମନରେ ଚିନ୍ତା ପଶିଲା, "ଆରେ ବେପାରୀ କ'ଣ ତାଙ୍କୁ କମ୍ ଟଙ୍କାର ସୁନା ଦେଇ ଅଧିକ ଟଙ୍କା ନେଇଗଲା । ମାସ ପୂରିବାକୁ ତ ଆହୁରି ଛ'ଦିନ ବାକି । ଆଜି ଯଦି ବେପାରୀ ଏତେ ଅଧିକ ଟଙ୍କା ନେଇଗଲା, ତେବେ ବାକି ଛଅ ଦିନରେ ସେ'ତ ତେର୍ ଅଧିକ ଟଙ୍କା ନେଇଯିବ ?" ତେବେ ସେଠ୍‌ଙ୍କ ମନରେ ଦମ୍ଭଥାଏ, "ବେପାରୀ ସିନା ଆଜି ତାଙ୍କଠାରୁ ଅଧିକ ନେଇଗଲା, ଗତ ଚବିଶଦିନ ହେଲା ସେ ସେଠ୍‌ଙ୍କୁ ତେର୍ ଅଧିକ ଟଙ୍କାର ସୁନା ଦେଇଆସିଛି । ଆଉ ମାତ୍ର ଛ'ଦିନ ଭିତରେ ସେ ତାଙ୍କଠାରୁ କେତେ ଅଧିକ ନେବ ?"

ତହିଁ ପରଦିନ ବେପାରୀ ସେଠ୍‌ଙ୍କୁ ଦେଲା ଲକ୍ଷେ ଟଙ୍କାର ସୁନା, କିନ୍ତୁ ସେଠ୍‌ଙ୍କଠାରୁ ନେଲା ଦୁଇଲକ୍ଷ ବାଷଠି ହଜାର ଏକଶହ ଚଉରାଳିଶ ଟଙ୍କା । ସେଦିନ ସେଠ୍‌ଙ୍କ ମନ ଭାରି ଦୁଃଖ । ସେଠ୍ ମନେ ମନେ ବିଗୁଡ଼ୁଥାନ୍ତି, ମାସଟା ଶେଷ ନ ହେଉଥାଏ ବୋଲି । ମାସଟା ଆଜିକାଲି ଭିତରେ ଶେଷ ହୋଇ ଯାଆନ୍ତାକି, ତାଙ୍କୁ ଆଉ କିଛି ଦେବାକୁ ପଡ଼ନ୍ତାନି । କିନ୍ତୁ ତା ହେଉଛି କୁଆଡ଼ୁ ? ଧନକୁବେର ସେଠ୍‌ଙ୍କ ଦେୟ ବଢ଼ି ବଢ଼ି ଯାଉଥାଏ । ଅଠେଇଶ ଦିନ ବେଳକୁ ସେଠ୍ ବେପାରୀଠାରୁ ଯେତିକ ସୁନା ଚୁକ୍ତି ଦିନଠାରୁ ନେଇଥିଲେ, ସେ ସବୁର ମୂଲ୍ୟଠାରୁ ତେର୍ ଅଧିକ ଟଙ୍କା ଦେଇ ସାରିଲେଣି । ଅଣତିରିଶ ଦିନ ବେପାରୀ ସେଠ୍‌ଙ୍କୁ ମାତ୍ର

ଲକ୍ଷେଟଙ୍କାର ସୁନା ଦେଇ ସେଠ୍‌ଙ୍କଠାରୁ ନେଲା ଏକକୋଟିଲକ୍ଷ ଚଉରାନବେହଜାର ତିନିଶହ ଦୁଇ ଟଙ୍କା । ଚୁକ୍ତିର ଶେଷ ଦିନ ସେଠ୍‌ଙ୍କୁ ଦେବାକୁ ପଡ଼ିଲା ତେସ୍ତାଅଶୀ ଲକ୍ଷ ଅଠାଅଶୀ ହଜାର ଛ'ଶହ ଆଠଟଙ୍କା । ଏହି ମାସକ ଭିତରେ ସେଠ୍ ବେପାରୀଠାରୁ ନେଲେ ମାତ୍ର ୩୦ ଲକ୍ଷ ଟଙ୍କାର ସୁନା ଓ ଚୁକ୍ତି ଅନୁଯାୟୀ ବେପାରୀକୁ ଦେଲେ ଦେଢ଼କୋଟି ଟଙ୍କାରୁ ଅଧିକ । ସେଠ୍‌ଙ୍କର ଯେତେ ଯେଉଁଠି ଟଙ୍କାପଇସା ସୁନା ରୂପା ଧନଦଉଲତ ଥିଲା ସେସବୁ ବିକିସୁକି ଚୁକ୍ତି ଅନୁସାରେ ସୁନାବେପାରୀକୁ ଆଦାୟ ଦେବାକୁ ବାଧ୍ୟ ହେଲେ । କଲିକତାରେ ଯେ ଥିଲେ ଏକ ସମୟରେ ସବୁଠାରୁ ବଡ଼ ଧନୀ ବ୍ୟବସାୟୀ, ଏହି ଘଟଣା ଚକ୍ରରେ ପଡ଼ି ସେ ହେଲେ ଦାଣ୍ଡର ଭିକାରୀ । ଏହି ଘଟଣାର କେଇଦିନ ପରେ ସେଠ୍ ବଡ଼ ମନସ୍ତାପରେ ମରିଗଲେ । ମଲାପୂର୍ବରୁ ତାଙ୍କ ବ୍ୟବସାୟ ତ ଯାଇଥିଲା । ମଲାପରେ ତାଙ୍କ ଘରଦ୍ୱାର ସବୁ ଦେଣା ଯୋଗୁଁ ନିଲାମ ହୋଇଗଲା । ପରେ ସେସବୁ ହେପାଜତ ଅଭାବରୁ ନଷ୍ଟ ହୋଇଗଲା । ଆଜି ଅପର ଚିତ୍ପୁର ରୋଡ଼ରେ ସେହି ଯେଉଁ ବିରାଟ ଭଗ୍ନ ସୌଧ ଠିଆହୋଇଛି; ଏହା ହିଁ ହେଉଛି ସେହି ସୌଧର କରୁଣ କାହାଣୀ । ଅତି ଲୋଭ, ପୁଣି ଅଙ୍କ ଶାସ୍ତ୍ରରେ ଅନଭିଜ୍ଞତା ତାଙ୍କ ସର୍ବସ୍ୱାନ୍ତର କାରଣ ହେଲା ।

ବର୍ତ୍ତମାନ ଆମେ ହିସାବ କରି ଦେଖିବା ସେଠ୍ କେମିତି ଏତେ ଟଙ୍କା ଅଧିକା ଦେଲେ ।

ସୁନା ବେପାରୀ ପ୍ରଥମ ଦିନ ସେଠ୍‌ଙ୍କ ଠାରୁ ପାଇଲା ଏକ ପଇସା ।

| | | | | |
|---|---|---|---|---|
| ଦ୍ୱିତୀୟ | ଦିନ | ପାଇଲା | ୨ | ପଇସା |
| ତୃତୀୟ | " | " | ୪ | " |
| ଚତୁର୍ଥ | " | " | ୮ | " |
| ପଞ୍ଚମ | " | " | ୧୬ | " |
| ଷଷ୍ଠ | " | " | ୩୨ | " |
| ସପ୍ତମ | " | " | ୬୦ | " ବା ୧ ଟଙ୍କା |
| ଅଷ୍ଟମ | " | " | | ୨ ଟଙ୍କା |
| ନବମ | " | " | | ୪ ଟଙ୍କା |
| ଦଶମ | " | " | | ୮ ଟଙ୍କା |
| ଏକାଦଶ | " | " | | ୧୬ ଟଙ୍କା |

| | | | | |
|---|---|---|---|---|
| ଦ୍ୱାଦଶ | ଦିନ | ପାଇଲା | ୩୨ | ଟଙ୍କା |
| ତ୍ରୟୋଦଶ | ,, | ,, | ୬୪ | ,, |
| ଚତୁର୍ଦ୍ଦଶ | ,, | ,, | ୧୨୮ | ,, |
| ପଞ୍ଚଦଶ | ,, | ,, | ୨୫୬ | ,, |
| ଷୋଡ଼ଶ | ,, | ,, | ୫୧୨ | ,, |
| ସପ୍ତଦଶ | ,, | ,, | ୧୦୨୪ | ,, |
| ଅଷ୍ଟାଦଶ | ,, | ,, | ୨୦୪୮ | ,, |
| ଊନବିଂଶ | ,, | ,, | ୪୦୯୬ | ,, |
| ବିଂଶ | ,, | ,, | ୮୧୯୨ | ,, |
| ଏକବିଂଶ | ,, | ,, | ୧୬୩୮୪ | ,, |
| ଦ୍ୱାବିଂଶ | ,, | ,, | ୩୨୭୬୮ | ,, |
| ତ୍ରୟୋବିଂଶ | ,, | ,, | ୬୫୫୩୬ | ,, |
| ଚତୁର୍ବିଂଶ | ,, | ,, | ୧୩୧୦୭୨ | ,, |
| ପଞ୍ଚବିଂଶ | ,, | ,, | ୨୬୨୧୪୪ | ,, |
| ଷଡ଼ବିଂଶ | ,, | ,, | ୫୨୪୨୮୮ | ,, |
| ସପ୍ତବିଂଶ | ,, | ,, | ୧୦୪୮୫୭୬ | ,, |
| ଅଷ୍ଟବିଂଶ | ,, | ,, | ୨,୦୯୭,୧୫୨ | ,, |
| ଊନତ୍ରିଂଶ | ,, | ,, | ୪,୧୯୪,୩୦୪ | ,, |
| ତ୍ରିଂଶ | ,, | ,, | ୮,୩୮୮,୬୦୮ | ,, |
| | | | ୧୬,୭୭୭,୨୧୫ ଟଙ୍କା ୬୩ ପଇସା | |

ସୁନାବେପାରୀ ତିରିଶ ଦିନ ଭିତରେ ସେଠଙ୍କୁ ଦେଲା ମାତ୍ର—୩୦,୦୦୦,୦୦ ଟଙ୍କାର ସୁନା; ପାଇଲା ଏକକୋଟି ସତଷଠି ଲକ୍ଷ ସତସ୍ତରୀ ହଜାର ଦୁଇଶହ ପନ୍ଦର ଟଙ୍କା ତେଷଠି ପଇସା । ଫଳରେ ସେଠଙ୍କର ମୋଟ୍ କ୍ଷତି ହେଲା ଏକକୋଟି ସଇଁତିରିଶ ଲକ୍ଷ ସତସ୍ତରୀ ହଜାର ଦୁଇଶହ ପନ୍ଦର ଟଙ୍କା ତେଷଠି ପଇସା ।

॥ ଦୁଇ ॥

# ଆକ୍‌ବର ବାଦଶାହା

# ଓ

# ଚେସ୍ ଖେଳ

ଚେସ୍ ଖେଳ ସାରା ପୃଥିବୀରେ ସବୁ ଦେଶରେ ପ୍ରାୟ ଖେଳାଯାଏ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହାର ଲୋକପ୍ରିୟତା ଖୁବ୍ ବେଶି । ସେ ଦେଶମାନଙ୍କରେ ଏମିତି ଦକ୍ଷ ଚେସ୍ ଖେଳାଳୀ ଅଛନ୍ତି, ଯେଉଁମାନଙ୍କୁ ପରାଜିତ କରିବା ସହଜ ନୁହେଁ । ଆଜିକାଲି ସେସବୁ ଦେଶରେ କମ୍ପ୍ୟୁଟର ସାହାଯ୍ୟରେ ମଧ୍ୟ ଚେସ ଖେଳାଯାଉଅଛି । ଅନେକେ ଜାଣି ନ ଥିବେ ଯେ ଏହି ଜନପ୍ରିୟ ଖେଳର ଉଦ୍ଭାବନ ସର୍ବପ୍ରଥମେ ହୋଇଥିଲା ଆମ ଭାରତବର୍ଷରେ । ଆମ ଦେଶରେ ଏହି ଖେଳର ନାମ ହେଉଛି ସତରଞ୍ଜ ଖେଳ । ଆମ ଦେଶରୁ ଏହା ସୃଷ୍ଟି ହୋଇ ପୃଥିବୀର ବିଭିନ୍ନ ଦେଶକୁ ବ୍ୟାପିଛି । ଐତିହାସିକମାନଙ୍କ ମତରେ ଷୋଡ଼ଶ ଶତାବ୍ଦୀରେ ବନାରସ ନିକଟବର୍ତ୍ତୀ ଏକ ସ୍ଥାନରେ ଏହି ଖେଳର ଜନ୍ମ । ଆକ୍‌ବର ବାଦଶାହାଙ୍କ ଅମଳରେ ଏହି ଖେଳର ଜନ୍ମ ହୋଇଥିଲା ବୋଲି କେତେକ କହନ୍ତି । ଆକ୍‌ବର ଏହି ଖେଳକୁ ଭାରି ଭଲ ପାଉଥିଲେ । ସେ ଅବସର ବିନୋଦନ ପାଇଁ ବେଳେ ବେଳେ ମନ୍ତ୍ରୀମାନଙ୍କ ସହିତ ବା ହାରେମ୍‌ରେ ଥିଲେ, ବେଗମ୍‌ମାନଙ୍କ ସହିତ ଚେସ୍ ଖେଳିବାକୁ ଭଲ ପାଉଥିଲେ । ଯେଉଁ ବେଗମ୍‌ମାନେ ଭଲ ଚେସ୍ ଖେଳିପାରୁଥିଲେ, ଆକ୍‌ବର ସେହି ବେଗମ୍‌ମାନଙ୍କୁ ଅଧିକ ଭଲ ପାଉଥିଲେ ।

ଦିନେ ଆକ୍‌ବର ଶୁଣିବାକୁ ପାଇଲେ ତାଙ୍କର ଅତି ପ୍ରିୟ ଏହି ସତରଞ୍ଜ ଖେଳର ପ୍ରକୃତ ଉଦ୍ଭାବକ ତାଙ୍କ ରାଜ୍ୟର ଜନୈକ ପ୍ରଜା । ସେ ବନାରସ ନିକଟବର୍ତ୍ତୀ ଏକ ସ୍ଥାନରେ ରହନ୍ତି । ଏହା ଶୁଣି ଆକ୍‌ବର ତାଙ୍କ ସେନାପତି ମାନସିଂହଙ୍କୁ ପଠାଇଲେ, ଚେସ୍ ଖେଳର ସ୍ରଷ୍ଟାଙ୍କୁ ତାଙ୍କ ଦରବାରକୁ ଆଣିବା ପାଇଁ । ମାନସିଂହ ବନାରସ ଯାଇ ନାନା ଖୋଜଖବର



(ଆକ୍‌ବର ବାଦଶାହା ମାନସିଂହଙ୍କ ସହିତ ଚେସ୍ ଖେଳୁଛନ୍ତି)

ନେଇ ଖେଳର ପ୍ରକୃତ ସ୍ରଷ୍ଟାଙ୍କର ସନ୍ଧାନ ପାଇ ତାଙ୍କୁ ଆକବରଙ୍କଠାକୁ ଘେନି ଆସିଲେ । ଖେଳର ସ୍ରଷ୍ଟା ଜନୈକ ଗରିବ ବ୍ରାହ୍ମଣ, ନାଁ ହେଉଛି ଦକ୍ଷିଣାବର୍ତ୍ତ । ଗରିବ ହେଲେହେଁ ବୁଦ୍ଧିମାନ ଓ ବିଦ୍ୱାନ । ପାଠପଢ଼ାଇ ନିଜ ପେଟ ପୋଷନ୍ତି ।

ଆକବରଙ୍କ ରାଜଦରବାରରେ ଦକ୍ଷିଣାବର୍ତ୍ତଙ୍କର ଖୁବ୍ ଜୋର୍‌ସୋରରେ ସ୍ୱାଗତ ସମ୍ବର୍ଦ୍ଧନା କରାଗଲା । ଆକବର ତାଙ୍କୁ ନିଜ ସିଂହାସନ ନିକଟରେ ବସାଇ ଖୁବ ସମ୍ମାନ

ଦେଲେ । ମନ୍ତ୍ରୀ ସେନାପତିମାନଙ୍କ ମେଳରେ ବସାଇ ଦକ୍ଷିଣାବର୍ତ୍ତିଙ୍କୁ କହିଲେ, "ଦକ୍ଷିଣାବର୍ତ୍ତି, ମୁଁ ତୁମ ଉଦ୍ଭାବନରେ ଖୁବ୍ ପ୍ରୀତ ହୋଇଅଛି । ମୋ ରାଜ୍ୟରେ ଏଭଳି ଗୁଣୀଲୋକ ଅଛନ୍ତି ଦେଖି ମୁଁ ଖୁସି ହେଉଛି । ମୁଁ ତୁମକୁ ପୁରସ୍କୃତ କରିବାକୁ ଇଚ୍ଛୁକ । ତୁମେ ଯେଉଁ ପୁରସ୍କାର ମାଗିବ, ମୁଁ ଦେବାକୁ ପ୍ରସ୍ତୁତ । ତୁମେ ଏଥର ଯାହା ମାଗିବାର ଇଚ୍ଛା ମାଗିପାର ।"

ଦାନୀ ହିସାବରେ ଆକ୍‌ବର ବାଦ୍‌ଶାହା ସାରା ରାଜ୍ୟରେ ସୁପରିଚିତ ଥିଲେ । ଗରିବଙ୍କର ଦୁଃଖ ଦେଖିଲେ ତାଙ୍କ ହୃଦୟ ତରଳି ଯାଉଥିଲା । ଦକ୍ଷିଣାବର୍ତ୍ତି କ'ଣ ଯେ ତାଙ୍କୁ ମାଗିବ, ଭାବି ସ୍ଥିରକରି ପାରିଲା ନାହିଁ ।

ଆକ୍‌ବର ପୁଣି ଥରେ ଦକ୍ଷିଣାବର୍ତ୍ତିକୁ ପୁରସ୍କାର ମାଗିବାକୁ କହିଲେ । ବହୁ ଚିନ୍ତା କରି ଦକ୍ଷିଣାବର୍ତ୍ତି ଥର ଥର ଗଳାରେ କହିଲା, "ହଜୁର, ଗରିବର ମା' ବାପ । ମୁଁ ହାଇ ହାଇ ସ୍କୁଲ ପିଲାମାନଙ୍କୁ ପାଠ ପଢ଼ାଇ ମୋ ଜୀବିକା ଅର୍ଜନ କରେ । ପାଠ ପଢ଼ାଇ ମୁଁ ଯେଉଁ ରୋଜଗାର କରେ, ମୋ କୁଟୁମ୍ବ ପୋଷିବାକୁ ଯଥେଷ୍ଟ ହୁଏନି ହଜୁର । ହଜୁର, ମୋତେ ଯଦି କିଛି ଧାନ ଦିଅନ୍ତି ତେବେ ମୋ କୁଟୁମ୍ବ ଟିକିଏ ଅଧିକ ସୁଖରେ ଚଳନ୍ତେ ।"

"ମୋ ରାଜ୍ୟରେ ତୁମ ଭଳି ବିଦ୍ୱାନ ଓ ବୁଦ୍ଧିମାନ ଲୋକ ନିଜ କୁଟୁମ୍ବ ପୋଷି ପାରନ୍ତି ନାହିଁ, ଏହାଠାରୁ ଅଧିକ ଲଜ୍ଜାର ବିଷୟ ମୋ ପକ୍ଷରେ ଆଉ କ'ଣ ହୋଇପାରେ ଦକ୍ଷିଣାବର୍ତ୍ତି ? ମୁଁ ଦେଖୁଛି ତୁମେ ବଡ଼ ନମ୍ର ଓ ସରଳ । ତୁମର ସୁନା, ରୁପା, ମଣି, ମୁକ୍ତା ପ୍ରତି ଲୋଭ ନାହିଁ । ତା ନ ହୋଇଥିଲେ ତୁମେ ସେସବୁ ପଦାର୍ଥ ନ ମାଗି ମୋତେ ସାମାନ୍ୟ ଧାନ ମାଗି ନ ଥାନ୍ତ । ମୁଁ ତୁମ ସରଳତାରେ ଖୁବ୍ ମୁଗ୍‌ଧ ହୋଇଛି ଦକ୍ଷିଣାବର୍ତ୍ତି । ଏଥର ତୁମେ କୁହ, ତୁମର କେତେ ପରିମାଣର ଧାନ ଦରକାର । ତୁମ ପରିବାରର ସାରା ଜୀବନ ଚଳିବା ପାଇଁ ଯେତେ ଧାନ ଦରକାର କୁହ, ମୁଁ ଦେବାକୁ ପ୍ରସ୍ତୁତ ଅଛି ।"

"ହଜୁର, ଆପଣ ଗରିବର ଉଦ୍ଭାବନରେ ଯଦି ସନ୍ତୁଷ୍ଟ ହୋଇଛନ୍ତି, ତେବେ ମୋର ସତରଞ୍ଚ ଖେଳରେ ଯେତୋଟି ଘର ଅଛି, ପ୍ରତି ଘର ପାଇଁ କ୍ରମବର୍ଦ୍ଧିଷ୍ଣୁ ହାରରେ ସେତିକି ସଂଖ୍ୟକ ଧାନ ଦେଲେ, ମୋର ଯଥେଷ୍ଟ ହେବ ଆଜ୍ଞା ।"

"ତୁମ ମାଗୁଣି ସ୍ପଷ୍ଟ ହେଉନି, ଦକ୍ଷିଣାବର୍ତ୍ତି । ଆଉ ଟିକିଏ ସ୍ପଷ୍ଟ କରି କୁହ ।"— ଆକବର କହିଲେ ।

ନିକଟରେ ଠିଆ ହୋଇଥିଲେ ବିଦୂଷକ ବୀରବଲ୍ । ସେ ଦକ୍ଷିଣାବର୍ତ୍ତଙ୍କ ମାଗୁଣି ବୁଝିପାରି ଆକବରଙ୍କୁ ବୁଝାଇ ଦେଲେ । ବୀରବଲ୍ କହିଲେ, "ହଜୁର, ସତରଞ୍ଜ ଖେଳରେ ଚଉଷଠିଟି ଘର ଅଛି । ଦକ୍ଷିଣାବର୍ତ୍ତ ମାଗୁଛନ୍ତି, ପ୍ରଥମ ଘର ପାଇଁ ତାଙ୍କୁ ଗୋଟିଏ ଧାନ ଦେବେ, ଦ୍ୱିତୀୟ ଘର ପାଇଁ ଦୁଇଟି ଧାନ । ତୃତୀୟ ଘର ପାଇଁ ଚାରୋଟି, ଚତୁର୍ଥ ଘର ପାଇଁ ଆଠଗୋଟି, ପଞ୍ଚମ ଘର ପାଇଁ ଷୋଳ ଗୋଟି, ଷଷ୍ଠ ଘର ପାଇଁ ବତିଶ ଗୋଟି, ସପ୍ତମ ଘର ପାଇଁ ଚଉଷଠି ଗୋଟି ଧାନ...... ।"

"ଥାଉ ଥାଉ, ମୁଁ ଏଥର ବୁଝିପାରିଲି ବୀରବଲ୍ । ଦକ୍ଷିଣାବର୍ତ୍ତଙ୍କୁ ଅନାଇ କହିଲେ, "ବୀରବଲ୍ ଯାହା କହୁଛନ୍ତି, ତୁମେ କ'ଣ ଠିକ୍ ସେତିକି ସଂଖ୍ୟକ ଧାନ ମାଗୁଛ ଦକ୍ଷିଣାବର୍ତ୍ତ ?"

"ହଜୁର, ଗରିବଙ୍କ ମା ବାପ, ଶ୍ରେଷ୍ଠ ମୂର୍ଦ୍ଧରେ ବଡ କଥା ସୁନ୍ଦର ଦିଶେ ନି । ଆପଣ ସେତିକି ଧାନ ଦେଲେ ମୋ ଗୁଜୁରାଣ ମେଣ୍ଟି ପାରିବ । ତା'ହେଲେ ମୁଁ ଛାତ୍ରମାନଙ୍କୁ ବିନା ପାରିଶ୍ରମିକରେ ସବୁ ଦିନପାଇଁ ପାଠ ପଢ଼ାଇ ପାରିବି ଆଜ୍ଞା !"

ହସିଲେ ଆକବର । ମୁଁ ଭାବିଥିଲି ଦକ୍ଷିଣାବର୍ତ୍ତ, ତୁମ ବୁଦ୍ଧି ଖୁବ୍ ପ୍ରଖର । କିନ୍ତୁ ମୁଁ ଯାହା ଦେଖୁଛି, ଏହା ତାର ଓଲଟା । ତୁମେ ଏହିଭଳି ଗୋଟିଏ, ଦୁଇଟି, ଚାରୋଟି, ଆଠଗୋଟି ଧାନ ନେଇ ନିଜ କୁଟୁମ୍ବର କି ଭରଣପୋଷଣ କରିବ ଶୁଣେ ? ତୁମର ମାଗୁଣିକୁ ରକ୍ଷା କରିବା ପାଇଁ ମୋତେ ଲଜ୍ଜା ଲାଗୁଛି । ହେଲେ ଯେତେବେଳେ କଥା ଦେଇଛି, ସେତେ-ବେଳେ ତୁମକୁ ନିଶ୍ଚୟ ଧାନ ଦେବି । ଅର୍ଥମନ୍ତ୍ରୀ ତୋଦରମଲ୍ଲଙ୍କୁ ଅନାଇ କହିଲେ, "ଦେଖ ତୋଦରମଲ୍ଲ ଆମ ଖମାରରୁ ଯେତିକି ସଂଖ୍ୟକ ଧାନ ଦକ୍ଷିଣାବର୍ତ୍ତ ଚାହୁଁଛି ସଙ୍ଗେ ସଙ୍ଗେ ତାଙ୍କୁ ଯୋଗାଇଦିଅ ।"

ଏତିକି କହି ଆକବର ଦରବାରରୁ ବାହାରିଗଲେ । ଗଲାବେଳେ ଦକ୍ଷିଣାବର୍ତ୍ତଙ୍କୁ ଅନାଇ କହିଦେଇ ଗଲେ, "ସେତିକି ଧାନରେ ଯଦି ତୁମର ଗୁଜରାଣ ନ ମେଣ୍ଟେ, ତେବେ ମୋତେ ଆହୁରି ଅଧିକ ଧାନ ମାଗିବାକୁ କୁଣ୍ଠାବୋଧ କରିବ ନି ଦକ୍ଷିଣାବର୍ତ୍ତ । ମୁଁ ତୁମକୁ ସାହାଯ୍ୟ କରିବା ପାଇଁ ସର୍ବଦା ପ୍ରସ୍ତୁତ ଅଛି । ତୁମେ ସିଂହଦ୍ୱାରଠାରେ ଅପେକ୍ଷା କର, ତୁମର ପ୍ରାପ୍ୟ ଧାନ ସଙ୍ଗେ ସଙ୍ଗେ ମିଳିଯିବ ।"

"ହଜୁରଙ୍କର ଏ ଦୟା ଭୁଲିବାର ନୁହେଁ ।" ମିନତିରେ ସହିତ ପ୍ରଣାମ କରି ଦକ୍ଷିଣାବର୍ତ୍ତ ଆକବରଙ୍କ ଫେରିଯିବା ପଥକୁ ଅନାଇ ରହିଲା ।

ସନ୍ଧ୍ୟା ହେବାକୁ ବସିଲାଣି । ଦକ୍ଷିଣାବର୍ତ୍ତ ଧାନ ପାଇଁ ସିଂହଦ୍ୱାରଠାରେ ଅପେକ୍ଷା କରି ବସିଛି । ଏପର୍ଯ୍ୟନ୍ତ ଆକବରଙ୍କ ଖମାରରୁ ଧାନ ଦିଆଯାଇ ପାରିନ । ତୋଦରମଲ୍ଲ ତାଙ୍କ ଗଣିତଜ୍ଞମାନଙ୍କୁ ଧରି ହିସାବ ଚଳାଇଛନ୍ତି, ପ୍ରକୃତରେ କେତେ ପରିମାଣର ଧାନ ଦକ୍ଷିଣାବର୍ତ୍ତ ପାଇବ ।

ହାରେମରେ ବେଗମ୍‌ଙ୍କ ସହିତ ସତରଞ୍ଜ ଖେଳ ଖେଳୁଥିଲା ବେଳେ ହଠାତ୍ ଆକବରଙ୍କର ଦକ୍ଷିଣାବର୍ତ୍ତ କଥା ମନେପଡ଼ିଲା । ଦକ୍ଷିଣାବର୍ତ୍ତକୁ ତା' ପ୍ରାପ୍ୟ ଧାନ ଦିଆଗଲା କି କଅଣ ବୁଝିବା ପାଇଁ ତୋଦରମଲ୍ଲଙ୍କଠାକୁ ଦୂତ ପଠାଇଲେ ।

ଦୂତ ଫେରିଆସି ଖବର ଦେଲା—ଦକ୍ଷିଣାବର୍ତ୍ତ ଜାହାଁପନାଙ୍କ କହିବା ଅନୁସାରେ ସିଂହଦ୍ୱାରଠାରେ ଅପେକ୍ଷା କରିଛି । ତାକୁ ତାଙ୍କ ପ୍ରାପ୍ୟ ଧାନ ଏ ପର୍ଯ୍ୟନ୍ତ ଦିଆଯାଇ ପାରିନ । ତୋଦରମଲ୍ଲ କହିଲେ ଗଣିତଜ୍ଞମାନେ ଗଣନା ସାରିନାହାନ୍ତି । ଗଣନା ସରିଲେ ହିସାବ କରି ସମସ୍ତ ଧାନ ତାଙ୍କୁ ଦିଆଯିବ ।

ଆଁ, ଗଣିତଜ୍ଞମାନଙ୍କୁ ଏତେ ସମୟ ଲାଗୁଛି ସାମାନ୍ୟ ହିସାବଟିଏ କରିବାକୁ ? ଏମାନେ ଗଣିତଜ୍ଞ ନା ଆଉ କିଛି ?

ଆକବର ବଡ଼ ବିରକ୍ତ ହେଲେ । ତୋଦରମଲ୍ଲଙ୍କଠାକୁ ତାଗିଦା କରି ଖବର ପଠାଇଲେ—ସକାଳ ହେବା ପୂର୍ବରୁ ଦକ୍ଷିଣାବର୍ତ୍ତକୁ ତା ପ୍ରାପ୍ୟ ଧାନ ଯେମିତି ଦିଆଯାଇଥାଏ । ସେ ନିଦ୍ରାରୁ ଉଠିବା ପୂର୍ବରୁ ଯେମିତି ଦକ୍ଷିଣାବର୍ତ୍ତ ତାଙ୍କ ନଅରରୁ ବିଦା ହୋଇଯାଇଥାଏ ।

ତହିଁ ପରଦିନ ।

ଆକବର ଶଯ୍ୟାତ୍ୟାଗ କରୁଛନ୍ତି । ହଠାତ୍ ଦୂତ ଆସି ଖବର ଦେଲା । ମନ୍ତ୍ରୀ ତୋଦରମଲ୍ଲ ଜାହାଁପନାଙ୍କ ଦର୍ଶନ ଅପେକ୍ଷାରେ ବାହାରେ ଠିଆ ହୋଇଛନ୍ତି ।

ଆକବର ବିରକ୍ତ ହେଲେ—"ଆଁ, ତୋଦରମଲ୍ଲ ଦର୍ଶନ ଅପେକ୍ଷାରେ ? ଏତେ ସକାଳୁ ଆସିବାର ପ୍ରୟୋଜନ ? ହେଉ, ଡାକ ଆଣ ।"

କ'ଣ, ତୋଦରମଲ୍ଲ, ଦକ୍ଷିଣାବର୍ତ୍ତିଙ୍କୁ ତା ପ୍ରାପ୍ୟ ଧାନ ଦିଆଯାଇ ବିଦାୟ କରିଯାଇଛି ତ ?

ତୋଦରମଲ୍ଲ ବଡ଼ ବ୍ୟସ୍ତ ହୋଇ କହିଲେ—"ନାହିଁ ଆଜ୍ଞା, ଦକ୍ଷିଣାବର୍ତ୍ତିଙ୍କୁ ତା ପ୍ରାପ୍ୟ ଧାନ ଏପର୍ଯ୍ୟନ୍ତ ଦିଆଯାଇ ପାରିନି ।"

ଆଁ, ଦିଆଯାଇ ପାରିନି ? ନ ଦିଆଯିବାର କାରଣ ? ବିରକ୍ତ ସ୍ୱରରେ ପଚାରିଲେ ଆକବର ।

ହଜୁରଙ୍କ ଖମାରରେ ସେତେ ପରିମାଣର ଧାନ କାହିଁ । ତୋଦରମଲ୍ଲ ରହି ରହି କହିଲେ ।

ହିନ୍ଦୁସ୍ଥାନର ସମ୍ରାଟ ଆକବର ବାଦଶାହାଙ୍କ ଖମାରରେ ଦକ୍ଷିଣାବର୍ତ୍ତିର ସାମାନ୍ୟ ମାଗୁଣିକୁ ପୂରଣ କଲାଭଳି ଧାନ ନାହିଁ ? ହାଃ, ହାଃ, ହାଃ, ହସାଇଲ, ହସାଇଲ ମୋତେ ତୋଦରମଲ୍ଲ ।

ହଜୁର, ଏହାକୁ ଠିକିଏ ଗୁରୁତର ସହିତ ବିଚାରକୁ ନିଅନ୍ତୁ । ମାତ୍ର ଚଉଷଠିଟି ଘର ପାଇଁ ଦକ୍ଷିଣାବର୍ତ୍ତି ଯେତିକ ଧାନ ମାଗିଛି, ସେତକ ଧାନ ମଣିମାଙ୍କ ଖମାରରେ କାହିଁକି, ସାରା ହିନ୍ଦୁସ୍ଥାନର ସମସ୍ତ ଖମାରରେ ବି ନାହିଁ ।

ହଠାତ୍ ଆକବର ଗମ୍ଭୀର ହୋଇଯାଇ ପଚାରିଲେ—ତୁମେ ଯାହା କହୁଛ, ତାହା କ'ଣ ସତ୍ୟ ତୋଦରମଲ୍ଲ ?

ଅସତ୍ୟର କୌଣସି ଅବକାଶ ନାହିଁ, ହଜୁର ! ଆମ ଗଣିତଜ୍ଞମାନେ ଗତ ରାତିସାରା ଗଣନା କରି ଦେଖିଛନ୍ତି, ଦକ୍ଷିଣାବର୍ତ୍ତି ଯେଉଁ ଧାନ ଆମଠାରୁ ପାଇବେ, ସେହି ଧାନର ପରିମାଣ ହେଉଛି ଅତି ବିରାଟ, ଯାହାକୁ କି କଳ୍ପନା କରିବା ଅନେକଙ୍କ ଶକ୍ତିର ବାହାରେ ।

ଆଁ, କଳ୍ପନାର ବାହାରେ ! ମୋର ସାରା ରାଜ୍ୟରେ ଅସଂଖ୍ୟ ଖମାର ଥାଇ ସବୁ ଖମାର ଧାନକୁ ଠୁଳ କଲେ କ'ଣ ଏହି ପରିମାଣ ପାଇଁ ଯଥେଷ୍ଟ ହେବନି, ତୋଦରମଲ୍ଲ ?

ନାହିଁ ଆଜ୍ଞା ! କ୍ଷମା କରିବେ, ଚେସ୍ ଖେଳର ଉଦ୍ଭାବକ ଜଣେ ଅତି ବିଚକ୍ଷଣ ପଣ୍ଡିତ । ସେ ମଣିମାଙ୍କୁ ଯେଉଁ ଉପହାର ମାଗିଲେ ତାହା ଉପରକୁ ଅତି ନ୍ୟୂନ ଦିଶିଲେ ହେଁ

ଗଣନା ପରେ ଯାହା ଜଣାଯାଉଛି, ଏହା ଏକ ଅତି ବିରାଟ ପରିମାଣ । ଏହା ପୁଣି ଏତେ ବିରାଟ ଯେ ସାରା ପୃଥିବୀରେ ଏତେ ପରିମାଣର ଧାନ ଉତ୍ପାଦିତ ହୁଏ କି ନାହିଁ ସନ୍ଦେହ ହଜୁର ! ଗଣନା ଦ୍ୱାରା ଯାହା ଦେଖାଯାଉଛି ହଜୁର, ସେ ମାଗିଥିବା ଧାନକୁ ରଖିବା ପାଇଁ ଯେଉଁ ବିରାଟ ଆକାରର ଖମାର ଦରକାର ହେବ, ସେହି ଖମାରର ଉଚ୍ଚତା ସାତହାତ ଓ ଓସାର ଦଶହାତ ହେଲେ, ଖମାରଟିର ଲମ୍ବ ହେବ ପ୍ରାୟ କୋଟିଏ ଯୋଜନ ପାଖାପାଖି ।

ଆଁ, ଲମ୍ବ ହେବ କୋଟିଏ ଯୋଜନ ? ଆକ୍‌ବର ହଠାତ୍ ଚମକି ପଡ଼ିଲେ, ତାଙ୍କ ଆଖି ଖୋସି ହୋଇଗଲା । ଦକ୍ଷିଣାବର୍ତ୍ତିର ଏତାଦୃଶ ମାଗୁଣିରେ ସେ ଅତିଶୟ ପ୍ରୀତ ହୋଇ ଦକ୍ଷିଣାବର୍ତ୍ତିକୁ ଡକାଇ ପଠାଇଲେ । ତାଙ୍କର ପ୍ରଖର ବୁଦ୍ଧି ପାଇଁ ତାଙ୍କୁ ଅଶେଷ ପ୍ରଶଂସା କଲେ । ନାନା ପ୍ରକାର ପୁରସ୍କାର ଦେଇ ତାଙ୍କ ପରିବାରର ଭରଣପୋଷଣ ପାଇଁ ବୃତ୍ତିମାନ ଖଞ୍ଜିଦେଲେ । କଥିତ ଅଛି, ଆଜି ପର୍ଯ୍ୟନ୍ତ ବନାରସଠାରେ ତାଙ୍କ ବଂଶଧରମାନେ ସେହି ଜମିକୁ ଭୋଗ ଦଖଲ କରି ଚଳୁଛନ୍ତି ।

ବର୍ତ୍ତମାନ ଆମେ ଦେଖିବା ଟୋଡରମଲ୍ଲ ଯେଉଁ ଗଣନା କଲେ ତାହା କେତେଦୂର ସତ୍ୟ । ଦକ୍ଷିଣାବର୍ତ୍ତି ଚାହିଁଥିଲେ ପ୍ରତି ଘର ପାଇଁ ପୂର୍ବ ଘର ବାବଦ ପାଇଥିବା ଧାନର ଦୁଇଗୁଣ ଧାନ ନେବେ । ଅର୍ଥାତ୍ ସେ ଯଦି ପ୍ରଥମ ଘର ପାଇଁ ଗୋଟିଏ ଧାନ ନଅନ୍ତି, ତେବେ ଦ୍ୱିତୀୟ ଘର ପାଇଁ ଦୁଇଗୋଟି, ତୃତୀୟ ଘର ପାଇଁ ଚାରିଗୋଟି, ଚତୁର୍ଥ ଘର ପାଇଁ ଆଠଗୋଟି, ଏହି ରୀତିରେ ଚଉଷଠିଟି ଘର ପାଇଁ କ୍ରମବର୍ଦ୍ଧିଷ୍ଣୁ ସଂଖ୍ୟାରେ ଧାନ ନେବେ; ଅର୍ଥାତ୍ ସେ ନେବା ଧାନର ସଂଖ୍ୟା ହେବ ୧+୨+୪+୮+୧୬+୩୨+୬୪+୧୨୦+…+ଏହି ରୀତିରେ ଚଉଷଠିତମ ଘର ପର୍ଯ୍ୟନ୍ତ । ଅର୍ଥାତ୍ ଅଙ୍କ ରୀତିରେ ଲେଖିଲେ ଏହା ହେବ—

$୧+୨+୨^{୨}+୨^{୩}+୨^{୪}+୨^{୫}+୨^{୬}+୨^{୭}+୨^{୮}+\cdots\cdots+୨^{୬୩}$ । ଏହି ପରିମାଣକୁ ମିଶାଇଲେ ଏହା ହେବ $୨^{୬୪}-୧$ = ୧୮, ୪୪୬, ୭୪୪, ୦୭୩, ୭୦୯, ୫୫୧, ୬୧୬ − ୧ = ୧୮, ୪୪୬, ୭୪୪, ୦୭୩, ୭୦୯, ୫୫୧, ୬୧୫ । ଏତିକ ସଂଖ୍ୟକ ଧାନର ଆୟତନ ହେବ କଳ୍ପନାତୀତ । ଏକ ଘନଫୁଟ ଧାନରେ ଯଦି ହାରାହାରି ଲକ୍ଷେ ଧାନ ରହେ, ତେବେ ଉପରୋକ୍ତ ଧାନର ଆୟତନ

ହେବ ପ୍ରାୟ ୧୫୮, ୦୦୦, ୦୦୦, ୦୦୦, ୦୦୦ ଘନଫୁଟ । ଏତକ ଧାନ ରଖିବା ପାଇଁ ଯଦି ଗୋଟିଏ ଖମାର ତିଆରି କରାଯାଏ, ତେବେ ସେ ଖମାରର ଉଚ୍ଚତା ଦଶଫୁଟ ଓ ଓସାର ପନ୍ଦର ଫୁଟ ହେଲେ ତାହାଁର ଲମ୍ବ ହେବ ପ୍ରାୟ କୋଡ଼ିଏ କୋଟି ମାଇଲ । ସେହି ଖମାରଟିକୁ ଯଦି ପୃଥିବୀ ପୃଷ୍ଠରେ ତିଆରି କରାଯାଏ, ତେବେ ଏହା ସାରା ପୃଥିବୀକୁ ଆଠ ହଜାର ଥର ଘୂରି ଆସିପାରିବ । ଏହି ଖମାରକୁ ପୃଥିବୀରୁ ଯଦି ସୂର୍ଯ୍ୟଆଡ଼କୁ ତିଆରି କରାଯାଏ, ତେବେ ଏହି ଖମାରଟି ସୂର୍ଯ୍ୟମଣ୍ଡଳ ଟପି ଆହୁରି କେତେ କୋଟି ମାଇଲ ସୂର୍ଯ୍ୟମଣ୍ଡଳ ଆରପାରିକୁ ଚାଲିଯିବ । ପୃଥିବୀଠାରୁ ସୂର୍ଯ୍ୟଙ୍କର ଦୂରତ୍ୱ ଯେତେ, ସେହି ଖମାରର ଲମ୍ବ ହେବ ତାହାଁର ଦୁଇଗୁଣରୁ ଅଧିକ ।

॥ ତିନି ॥

# ଆଉରଙ୍ଗଜେବ୍‌ଙ୍କ ହାତା ପଣିଆ

ମୋଗଲ ବାଦଶାହା ଆଉରଙ୍ଗଜେବ୍ ଯେତେବେଳେ ସମ୍ରାଟ ଭାବରେ ସାରା ଭାରତକୁ ଶାସନ କରୁଥିଲେ, ସେତେବେଳେ ତାଙ୍କର ବଂଶାଧିକ ସେନାପତି ମଧ୍ୟରୁ ତାଙ୍କର ସବୁଠାରୁ ଅଧିକ ବିଶ୍ୱସ୍ତ ଓ ପ୍ରଭୁଭକ୍ତ ଥିଲେ ମିର୍‌କାସିମ୍ । ଆଉରଙ୍ଗଜେବ୍‌ଙ୍କ ବାପା ଶାହାଜାହାନଙ୍କ ରାଜୁତି କାଳରେ ଏକ ସାଧାରଣ ସୈନିକ ଭାବରେ ବିଶାଳ ମୋଗଲ ବାହିନୀରେ ସେ ସାମିଲ ହୋଇଥିଲେ । ନିଜ ଦକ୍ଷତା, ସାହସ, ବୀରତ୍ୱ ଯୋଗୁଁ ଉଠି ଉଠି ଶାହାଜାହାନଙ୍କ ବନ୍ଦୀ ହେବା ଅବସ୍ଥାରେ ଜନୈକ ସେନାପତିର ପଦବୀ ହାସଲ କରିଥିଲେ । ଆଉରଙ୍ଗଜେବ୍ ଯେତେବେଳେ ତାଙ୍କ ଭାଇମାନଙ୍କୁ ପରାସ୍ତ କରି ମୋଗଲ ସାମ୍ରାଜ୍ୟର ସର୍ବମୟ କର୍ତ୍ତା ହେଲେ, କଥିତ ଅଛି ଯେଉଁ ସେନାପତିମାନେ ତାଙ୍କୁ ଅତ୍ୟଧିକ ସାହାଯ୍ୟ କରିଥିଲେ, ମିରକାସିମ ସେମାନଙ୍କ ଭିତରୁ ଜଣେ । ସେ ନିଜର ଦକ୍ଷତା, ବିଶ୍ୱସ୍ତତା ଓ ବୀରତ୍ୱ ପାଇଁ ଆଉରଙ୍ଗଜେବ୍‌ଙ୍କର ଅତ୍ୟଧିକ ପ୍ରିୟ ହୋଇ ପଡ଼ିଥିଲେ । ଏକ ବୟୋଜ୍ୟେଷ୍ଠ ସେନାପତି ଭାବରେ ମୋଗଲ ବାହିନୀରେ ତାଙ୍କୁ ଯଥେଷ୍ଟ ସମ୍ମାନ ମିଳୁଥିଲା । ଅର୍ଦ୍ଧ ଶତାବ୍ଦୀ ଧରି ସେ ଭାରତର ପ୍ରାୟ ସବୁ ଯୁଦ୍ଧରେ ଯୋଗ ଦେଇଛନ୍ତି । ଲୋକେ କହନ୍ତି ମିରକାସିମ ବିଭିନ୍ନ ଯୁଦ୍ଧରେ ଯେତେ ରକ୍ତ ଦେଇଛନ୍ତି, ସେତକ ରକ୍ତକୁ ଠୁଳ କରିଥିଲେ ଗୋଟିଏ ପୋଖରୀ ପୂର୍ଣ୍ଣ ହୋଇ ଯାଇଥାନ୍ତା । ମୋଗଲ ବାହିନୀରେ ଲଢ଼ି ଲଢ଼ି ମିରକାସିମ ବୁଢ଼ା ହୋଇଗଲେଣି । ଗତ ପଚାଶ ବର୍ଷ ଧରି ଯୁଦ୍ଧ କରି କରି ତାଙ୍କ ଧମନୀ ଶିଥିଳ ହୋଇ ଆସିଲାଣି ।

ପ୍ରଧାନ ସେନାପତିଙ୍କଠାରୁ ଆରମ୍ଭ କରି ସୈନ୍ୟବାହିନୀର ସମସ୍ତଙ୍କ ଇଚ୍ଛା ମିର୍‌କାସିମ୍ କାର୍ଯ୍ୟରୁ ଅବସର ନିଅନ୍ତୁ । ତାଙ୍କୁ ଏ ବୁଢ଼ା ବୟସରେ ଆଉ ଅଧିକ ଖଟାଇବା

ଉଚିତ ହେଉନାହିଁ । ପ୍ରଧାନ ସେନାପତିଙ୍କ ସୁପାରିଶରେ ଆଉରଙ୍ଗଜେବ୍‌ଙ୍କ ନିକଟରେ ତାଙ୍କ ଅବସର ନେବା କଥା ପେଶ୍ କରାଗଲା । ଆଉରଙ୍ଗଜେବ୍ ନିଜ ପ୍ରିୟ ସେନାପତିଙ୍କୁ ବିଦାୟ ଦେବା କଥା ଚିନ୍ତା କଲାବେଳକୁ ତାଙ୍କୁ ଦୁଃଖ ଲାଗିଲା । ହେଲେ, ଆଉ କ'ଣ କରାଯିବ ? ବିଦାୟ ତ ଦେବାକୁ ହେବ । ଦିନେ ମିର୍‌କାସିମଙ୍କୁ ଆଉରଙ୍ଗଜେବ୍‌ଙ୍କ ଦରବାରକୁ ଡକାଗଲା ।

ରାଜ ଦରବାରରେ ମିର୍‌କାସିମ୍ ହାଜର ହୋଇ ସମ୍ରାଟଙ୍କ ସମ୍ମୁଖରେ ଯୋଡ଼ହସ୍ତ ହୋଇ ଠିଆ ହେଲେ ।

ଆଉରଙ୍ଗଜେବ୍ ମିର୍‌କାସିମଙ୍କୁ ଅନାଇ କହିଲେ, "ଦେଖ ସେନାପତି, ତୁମେ ପଚିଶ ବର୍ଷ ଧରି ମୋଗଲ ବାହିନୀର ଯେଉଁ ଅକାତର ସେବା କରି ଆସିଛ, ସେଭଳି ଦୃଷ୍ଟାନ୍ତ ଆମ ଦେଶରେ ବିରଳ । ତୁମର କାର୍ଯ୍ୟ ଦକ୍ଷତା ଓ ବିଶ୍ୱସ୍ତତାରେ ସମସ୍ତେ ମୁଗ୍‌ଧ । ତୁମକୁ ଆଉ ଅଧିକ ଦିନ ନ ଖଟାଇ ଅବସର ଦେବା କଥା ଚିନ୍ତା କରାଯାଉଛି । ତୁମର ଅପୂର୍ବ ରାଜଭକ୍ତି, ବିଶ୍ୱସ୍ତତା, ବୀରତ୍ୱ ଓ କାର୍ଯ୍ୟଦକ୍ଷତା ପାଇଁ ତୁମକୁ କି ପୁରସ୍କାର ଯଥୋଚିତ ହେବ, ଆମେ ସମସ୍ତେ ଚିନ୍ତା କରୁଛୁ ।"

'ଜାହାଁପନା, ଆପଣ ଗରିବର ମା' ବାପ । ଯାହା ଆପଣ ବିଚାର କରିବେ ତାହା ହିଁ ମୋର ଶିରୋଧାର୍ଯ୍ୟ ।'

ହେଉ, କାଲି ରାଜ ଦରବାରରେ ତୁମର ପୁରସ୍କାର କଥା ଘୋଷଣା କରାଯିବ ।

× × ×

ଆଉରଙ୍ଗଜେବ୍‌ଙ୍କ ମନ୍ତ୍ରଣା କକ୍ଷ । ପ୍ରଧାନ ମନ୍ତ୍ରୀଙ୍କ ସହ ମିର୍‌କାସିମଙ୍କୁ ପୁରସ୍କାର ଦେବାକଥା ମନ୍ତ୍ରଣା ଚାଲିଛି । ପ୍ରଧାନ ମନ୍ତ୍ରୀ ଶଙ୍କିତ ମନରେ କହିଲେ—ଜାହାଁପନା, ମିର୍‌କାସିମ ଅତ୍ୟନ୍ତ ବିଶ୍ୱସ୍ତ, ସାହସୀ, ବୀର ଓ ପ୍ରଭୁଭକ୍ତ । ତା'ର ପ୍ରଶଂସାରେ ଆଜି ସାରା ମୋଗଲବାହିନୀ ପାଗଳ । ହଜୁରଙ୍କ ରାଜକୋଷରେ ଅର୍ଥର କିଛି ଅଭାବ ନାହିଁ । ତାଙ୍କ ଭଳି ଜଣେ ବିଶ୍ୱସ୍ତ ସେନାପତିଙ୍କୁ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେଲେ ଆପଣଙ୍କ ରାଜକୋଷର ବିଶେଷ କିଛି କ୍ଷତି ଘଟିବ ନାହିଁ ହଜୁର ! ତାଙ୍କ ଭଳି ଜଣେ ଦକ୍ଷ ସେନାପତି ପାଇଁ ଏ ଅର୍ଥ କିଛି ନୁହେ 'ଜାହାଁପନା' ।

ଆଁ, ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ! ଆଉରଙ୍ଗଜେବ୍‌ଙ୍କ ଆଖି ଖୋସି ହୋଇଗଲା । ରାଜକୋଷରୁ ଏତେଗୁଡ଼ିଏ ସ୍ୱର୍ଣ୍ଣମୁଦ୍ରା ଅନ୍ତର କରିବାକୁ ସେ ଇଚ୍ଛୁକ ନ ଥିଲେ ।

ହଜୁର, ଆକବର ବାଦଶାହଙ୍କ ଅମଳରୁ ଏହି ପ୍ରଥା ଦରବାରରେ ଚଳି ଆସୁ-ଅଛି । ଅବସର ନେଉଥିବା ସେନାପତିଙ୍କ ପାଇଁ ଏହି ମୁଦ୍ରା କଟୁ ଛୁଟିଛି ଜାହାଁପନା ।

ଆଉରଙ୍ଗଜେବ ନିଜ ସେନାପତିଙ୍କୁ ଏତେଗୁଡ଼ିଏ ଅର୍ଥ ଦେବାକୁ ପ୍ରସ୍ତୁତ ନ ଥିଲେ । କି ବାଟ କଲେ ଅଳ୍ପ ଅର୍ଥରେ କାମ ଚଳିଯିବ, ସେ ଖାଲି ସେଇଆ ଚିନ୍ତା କରୁଥିଲେ । ତେବେ ଉପରକୁ ନିଜ ବଦାନ୍ୟତା ଦେଖାଇବା ପାଇଁ କହିଲେ—ନିଶ୍ଚୟ, ମିର୍‌କାସିମଙ୍କ ଭଳି ଦକ୍ଷ ଓ ବିଶ୍ୱସ୍ତ ସେନାପତିଙ୍କ ପାଇଁ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା କଟୁ ଛୁଟିଛି



( ଆଉରଙ୍ଗଜେବଙ୍କ ରାଜଦରବାରରେ ସେନାପତି ମିର୍‌କାସିମ୍ )

ପ୍ରଧାନ ମନ୍ତ୍ରୀ । ମୋର ଇଚ୍ଛା, କି ବାଟ କଲେ ସେନାପତିଙ୍କୁ ଆହୁରି ଅଧିକ ସାହାଯ୍ୟ ଦେଇ ହେବ, ମୁଁ ବର୍ତ୍ତମାନ ସେଇଆ ଚିନ୍ତା କରୁଛି । ହେଉ, ତେବେ ତୁମ୍ଭେ ଆଜି ଯାଅ । କାଲି ମୁଁ ରାଜଦରବାରରେ ମୋ ନିଷ୍ପତ୍ତି ଜଣାଇବି ।

ଆଉରଙ୍ଗଜେବଙ୍କ ଏହି କଥା କେଇ ପଦରୁ ତାଙ୍କ ଉଦାରତା ସ୍ପଷ୍ଟ ଜଣା ପଡ଼ୁଥିଲା । ଏହି କଥା ଯିଏ ଶୁଣିଲା, ସେ ଆଉରଙ୍ଗଜେବଙ୍କୁ ପ୍ରଶଂସା ନ କରି ରହି ପାରିଲାନି । ଏକଥା ମଧ୍ୟ ମିର୍ କାସିମଙ୍କ କାନକୁ ଗଲା । ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଆଲ୍ଲାଙ୍କୁ ତାଙ୍କର କୃତଜ୍ଞତା ଜଣାଇଲେ ।

ତହିଁ ପରଦିନ ରାଜଦରବାର । ସେନାପତି ମିର୍ କାସିମଙ୍କୁ ଡକାଗଲା । ମିର୍ କାସିମ ଆସି ସମ୍ରାଟଙ୍କ ଆଗରେ ହାତ ଯୋଡ଼ି ଠିଆ ହେଲେ । ଆଉରଙ୍ଗଜେବ କହିଲେ— ଦେଖ ସେନାପତି, ମୋଗଲ ବାଦ୍‌ଶାହଙ୍କର ଚିରାଚରିତ ପ୍ରଥା ଅନୁସାରେ ଯେଉଁ ସେନାପତିମାନେ କାର୍ଯ୍ୟରୁ ଅବସର ନିଅନ୍ତି, ସେମାନଙ୍କୁ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦିଆଯାଏ । କିନ୍ତୁ ସେହି ଅର୍ଥର ପରିମାଣ ତୁମ ଭଳି ଜଣେ ବୀର, ବିଶ୍ୱସ୍ତ, ଦକ୍ଷ ସେନାପତି ପାଇଁ ଯଥେଷ୍ଟ ନୁହେଁ ବୋଲି ମୁଁ ଭାବୁଛି । ତୁମ ପାଇଁ ମୁଁ ରାଜକୋଷ ମୁକ୍ତ କରିଦେବାକୁ ପ୍ରସ୍ତୁତ । ତୁମେ ମାସକ ପର୍ଯ୍ୟନ୍ତ ପ୍ରତିଦିନ ରାଜକୋଷରୁ ଯେତେ ସ୍ୱର୍ଣ୍ଣମୁଦ୍ରା ବୋହି ନେଇ ପାରିବ, ସେସବୁ ତୁମର ନିଜର ହେବ । ତେବେ ଗୋଟିଏ ସର୍ତ୍ତ ରହିଛି । ତୁମେ ସ୍ୱର୍ଣ୍ଣମୁଦ୍ରା କ୍ରମବର୍ଦ୍ଧିଷ୍ଣୁ ହାରରେ ନେବ ! ପ୍ରଥମ ଦିନ ଯାହା ନେଇଥିବ, ଦ୍ୱିତୀୟଦିନ ତାହାର ଦୁଇଗୁଣ ସ୍ୱର୍ଣ୍ଣମୁଦ୍ରା ନେବ । ପ୍ରଥମରୁ ଗୋଟିଏ ସ୍ୱର୍ଣ୍ଣମୁଦ୍ରାରୁ ଆରମ୍ଭ କରିବ । ପ୍ରଥମଦିନ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ନେବ । ତହିଁ ପରଦିନ ଦୁଇଟା । ଯେତେଦିନ ପର୍ଯ୍ୟନ୍ତ, ତୁମେ ସ୍ୱର୍ଣ୍ଣମୁଦ୍ରାଗୁଡ଼ିକୁ ନିଜେ ବୋହି ନେଇ ପାରୁଥିବ, ସେତେଦିନ ପର୍ଯ୍ୟନ୍ତ ତୁମକୁ କ୍ରମବର୍ଦ୍ଧିଷ୍ଣୁ ହାରରେ ସ୍ୱର୍ଣ୍ଣମୁଦ୍ରା ଦିଆଯାଉଥିବ । ଯେଉଁଦିନ ଠାରୁ ତୁମେ ମୁଦ୍ରାଗୁଡ଼ିକୁ ନିଜେ ବୋହି ନେଇ ପାରିବନି, ସେହିଦିନ ଠାରୁ ଏହି ଚୁକ୍ତି ବନ୍ଦ ହେବ । ତୁମେ ଜଣେ ବୀର, ସ୍ୱର୍ଣ୍ଣମୁଦ୍ରାକୁ ବୋହି ନେବା ପାଇଁ ଅନ୍ୟ କାହାରି ସାହାଯ୍ୟ ନେବନି । ତୁମେ ଯଦି ଏଥିରେ ରାଜି ହୁଅ, ତେବେ ମୁଁ ଆଜି ଏହି ଦରବାରରେ ଘୋଷଣା କରିବି ଯେ ତୁମ ପାଇଁ କାଲିଠାରୁ ଆମ ରାଜକୋଷ ଖୋଲି କରି ଦିଆଯିବ । ତୁମେ ଉପରୋକ୍ତ ସର୍ତ୍ତ ଅନୁଯାୟୀ ଯେତେ ସ୍ୱର୍ଣ୍ଣମୁଦ୍ରା ବୋହିନେଇ ପାରିବ, ସେତେ ତୁମର ଲାଭ । ତୁମକୁ ଏଭଳି ଭାବରେ ପୁରସ୍କୃତ ନ କରି ମାତ୍ର ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ଦେଇ ବିଦାୟ ଦେବାକୁ ମୁଁ ଇଚ୍ଛୁକ ନୁହେଁ ସେନାପତି ।

ଆଉରଙ୍ଗଜେବଙ୍କ ଘୋଷଣା ଶୁଣି ଦରବାରରେ ସମସ୍ତେ ତାଟଙ୍କା । ବାସ୍ତବିକ ସମ୍ରାଟ କେତେ ଉଦାର ନୁହନ୍ତି ! ନିଜର ଜଣେ ସାମାନ୍ୟ ସେନାପତିଙ୍କ ପାଇଁ ରାଜକୋଷ ଖୋଲି କରିଦେଲେ । ପୁଣି ସେ ଯେତେ ସ୍ୱର୍ଣ୍ଣମୁଦ୍ରା ନେଇ ପାରିପାରନ୍ତି । କୌଣସି ସମ୍ରାଟ ତ ଏଥିପୂର୍ବରୁ ଏତେ ଉଦାରତା ଦେଖାଇ ନ ଥିଲେ ।

ସେନାପତି ସମ୍ରାଟଙ୍କ ଏତାଦୃଶ ପ୍ରସ୍ତାବରେ ଖୁସି ହୋଇଗଲେ । ସେ ମନେ ମନେ ଭାବିଲେ ଆଁ, ରାଜକୋଷ ମୋ ପାଇଁ ଖୋଲା ! ମୁଁ ଯେତେ ସ୍ୱର୍ଣ୍ଣମୁଦ୍ରା ବୋହି ନେଇ ପାରିବି ! ଅନ୍ୟ ସେନାପତିଙ୍କ ଭଳି ଏକାଥରକେ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ନେଇ କି ଲାଭ ? ଏହି ଉପାୟରେ ତ କେତେ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ମୁଁ ବୋହି ନେଇଯାଇ ପାରିବି ।

ସେ ସଙ୍ଗେ ସଙ୍ଗେ ସମ୍ରାଟଙ୍କ ପ୍ରସ୍ତାବରେ ରାଜି ହୋଇଯାଇ କହିଲେ—ହଜୁର, ଆପଣ ଗରିବର ମା ବାପ । ଆପଣ ଯଦି ଏ ଗରିବକୁ ଏଭଳି ଭାବରେ ପୁରସ୍କୃତ କରିବାକୁ ଇଚ୍ଛା କରୁଛନ୍ତି, ତେବେ ମୋର ସେଥିରେ ଅରାଜି ହେବାର କୌଣସି କାରଣ ନାହିଁ । ଆପଣଙ୍କ ସର୍ତ୍ତ ଅନୁସାରେ ମୁଁ ପ୍ରତିଦିନ ରାଜକୋଷକୁ ଯିବାକୁ ପ୍ରସ୍ତୁତ ।

ଧନ୍ୟ, ଧନ୍ୟ, ତୁମେ ମିରକାସିମ୍ । ତୁମେ ମୋ ପ୍ରସ୍ତାବ ଗ୍ରହଣ କରିଛ ସେଥିପାଇଁ ଧନ୍ୟବାଦ । ତୁମେ କାଲଠାରୁ ପ୍ରତିଦିନ ରାଜକୋଷକୁ ଆସିବ । ସର୍ତ୍ତ ଅନୁଯାୟୀ ପ୍ରତିଦିନ ଆବଶ୍ୟକୀୟ ସ୍ୱର୍ଣ୍ଣମୁଦ୍ରା ପାଇ ପାରିବ । ମୁଁ ରାଜକୋଷ କର୍ମଚାରୀମାନଙ୍କୁ ସେହି ଅନୁସାରେ ନିର୍ଦ୍ଦେଶ ଦେଉଛି ।

ପ୍ରଥମ ଦିନ ମିର୍‌କାସିମ ରାଜକୋଷଠାକୁ ଗଲେ । ରାଜକୋଷର କର୍ମଚାରୀ ତାଙ୍କୁ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦେଇ ବିଦା କଲା । ତହିଁ ପରଦିନ ସେନାପତି ଦୁଇଗୋଟି, ତୃତୀୟ ଦିନ ଚାରିଗୋଟି, ଚତୁର୍ଥ ଦିନ ଆଠୋଟି, ପଞ୍ଚମ ଦିନ ଷୋଳଟି, ଷଷ୍ଠଦିନ ବତିଶ ଗୋଟି, ସପ୍ତମ ଦିନ ଚଉଷଠି ଗୋଟି ସ୍ୱର୍ଣ୍ଣମୁଦ୍ରା ନେଇ ଫେରି ଆସିଲେ । ମନ ତାଙ୍କର ଭାରି ଖୁସି । ପ୍ରଥମ ଦିନ ଯାହା ପାଉଛନ୍ତି ପରଦିନ ତହିଁର ଦୁଇଗୁଣା ପାଉଛନ୍ତି । ଏକାଦଶ ଦିନରେ ସେ ପାଇଲେ ୧୦୨୪ ଗୋଟି ସ୍ୱର୍ଣ୍ଣମୁଦ୍ରା । ତହିଁ ପରଦିନ ପାଇଲେ ୨୦୪୮ ଗୋଟି । ତ୍ରୟୋଦଶ ଦିନ ସେ ପାଇଲେ ୪୦୯୬ ଗୋଟି ସ୍ୱର୍ଣ୍ଣମୁଦ୍ରା । ଚତୁର୍ଦ୍ଦଶ ଦିନରେ ସେ ପାଇଲେ ୮୧୯୨ ଗୋଟି ସ୍ୱର୍ଣ୍ଣମୁଦ୍ରା । ଏହି ଶେଷୋକ୍ତ ସ୍ୱର୍ଣ୍ଣମୁଦ୍ରା ଏତେ ଭାରି ହେଲା ଯେ ତାଙ୍କ ପକ୍ଷରେ ଏହାକୁ ବୋହି ନେବା କଷ୍ଟକର ହୋଇପଡ଼ିଲା । ପଞ୍ଚଦଶ ଦିନରେ ରାଜକୋଷରୁ ତାଙ୍କୁ ଯେଉଁ ୧୬୩୮୪ ଗୋଟି ସ୍ୱର୍ଣ୍ଣମୁଦ୍ରା ମିଳିଲା ତହିଁର ଓଜନ ହେଲା ଛଅ ମହଣରୁ ଅଧିକ । ସେନାପତି ଯଦିଓ ବୁଢ଼ାହୋଇ ଯାଇଥିଲେ, ତଥାପି ଏହି ସ୍ୱର୍ଣ୍ଣମୁଦ୍ରାକୁ କାନ୍ଧରେ ପକାଇ କୌଣସି ପ୍ରକାରେ ଘରକୁ ବୋହିନେଲେ । କିନ୍ତୁ ଷୋଡ଼ଶ ଦିନରେ ତାଙ୍କୁ ମିଳିଲା ୩୨,୭୬୮ ଗୋଟି ସ୍ୱର୍ଣ୍ଣମୁଦ୍ରା, ଯାହାର ଓଜନ ବାର ମହଣରୁ ଅଧିକ । ବାର ମହଣ ଓଜନର ସ୍ୱର୍ଣ୍ଣମୁଦ୍ରା ତାଙ୍କ ପକ୍ଷରେ ବୋହିନେବା ଅସମ୍ଭବ ହୋଇ ପଡ଼ିଲା । ତେବେ ସେ ପ୍ରାଣପଣେ ଲାଗି ଏହାକୁ ନେବାକୁ ଚେଷ୍ଟାକଲେ ।

ଏହି ସମୟରେ ସମ୍ରାଟ ଆଉରଙ୍ଗଜେବ ରାଜକୋଷଠାରେ ଆସି ହଠାତ୍ ପହଞ୍ଚି-ଗଲେ । ସେନାପତିଙ୍କୁ ସ୍ୱର୍ଣ୍ଣମୁଦ୍ରା ବୋହିବା ପାଇଁ ଝାଳବାଳ ବୁହାଇ ପ୍ରାଣାନ୍ତକ ଚେଷ୍ଟା କରିବା ଦେଖି ହସି ହସି କହିଲେ—ଚେଷ୍ଟାକର ମିରକାସିମ, ଚେଷ୍ଟାକର । ତୁମପାଇଁ ରାଜକୋଷ ପୁରାପୁରି ମୁକ୍ତ । ତୁମେ ଯେତେ ବୋହି ନେଇ ପାରିବ, ସେତେ ତୁମର ଲାଭ ।

ହଜୁର, ମୋ ପକ୍ଷରେ ଏତିକି ବି ନେବା ସମ୍ଭବ ନୁହେଁ । ଯେତିକି ନେଲି ସେତିକି କହି ସେ ସ୍ୱର୍ଣ୍ଣମୁଦ୍ରାତକ ଛାଡ଼ି ଚାଲିଗଲେ ।

ଆଉରଙ୍ଗଜେବ ମନେ ମନେ ଖୁସି ହୋଇ କର୍ମଚାରୀଙ୍କୁ ସଙ୍ଗେ ସଙ୍ଗେ ପଚାରିଲେ—ସେନାପତି ଏହି ପନ୍ଦର ଦିନ ଭିତରେ କେତେ ସ୍ୱର୍ଣ୍ଣମୁଦ୍ରା ନେଲେଣି ?

ହଜୁର, ବେଶୀ ନୁହେଁ, ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରାର ଏକ ତୃତୀୟାଂଶଠାରୁ ବି କମ୍ ।

ସମ୍ରାଟ ମନେ ମନେ ଭାବିଲେ, ଯାହାହେଉ, ଦୁଇ ତୃତୀୟାଂଶ ତ ବଞ୍ଚିଗଲା ।

ଆମେ ବର୍ତ୍ତମାନ ହିସାବ କରିବା—ସେନାପତି ପନ୍ଦର ଦିନ ଯାହା ନେଲେ ତାହା ହେଉଛି $୧+୨+୨^{୨}+୨^{୩}+୨^{୪}+\cdots\cdots ୨^{୧୪}=୩୨,୭୬୭$; ଏକଲକ୍ଷର ଏକ ତୃତୀୟାଂଶଠାରୁ କମ୍ । ପ୍ରତ୍ୟେକ ସ୍ୱର୍ଣ୍ଣମୁଦ୍ରାର ଓଜନ ୧୫ ଗ୍ରାମ୍ ହୋଇଥିବାରୁ ଷୋଡ଼ଶ ଦିନରେ ଯେଉଁ ୩୨,୭୬୮ ଗୋଟି ମୁଦ୍ରା ପାଇଲେ, ତହିଁର ଓଜନ ହେଲା ୪୯୦.୫୨୦ କିଲୋଗ୍ରାମ୍ ଅର୍ଥାତ୍ ବାର ମହଣରୁ ଅଧିକ । ବାର ମହଣରୁ ଅଧିକ ଓଜନ ସେନାପତିଙ୍କ ପକ୍ଷରେ ବୋହିବା ସମ୍ଭବ ନ ହେବାରୁ ସେ ଛାଡ଼ିଦେଇ ଚାଲିଗଲେ ଓ ଚୁକ୍ତି ଅନୁସାରେ ଆଉ ରାଜକୋଷକୁ ଆସିବା ଦରକାର ପଡ଼ିଲା ନାହିଁ ।

ସେନାପତି ଯଦି ମୂଳରୁ ଏତିକି ଗଣନା କରି ଜାଣିପାରିଥାନ୍ତେ, ତେବେ ସେ ସମ୍ରାଟଙ୍କ କଥାରେ ରାଜି ନ ହୋଇ ଚିରଚରିତ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ନେଇ ବିଦାୟ ହୋଇ ଯାଇଥାନ୍ତେ । ଗଣିତରେ ଅଜ୍ଞ ଥିବାରୁ ସମ୍ରାଟଙ୍କ ପ୍ରସ୍ତାବ ତାଙ୍କୁ ଅଧିକ ଲାଭଜନକ ବୋଲି ଜଣାପଡ଼ିଲା । ଫଳରେ ସେ ବିପୁଳ କ୍ଷତି ସହିଲେ ଓ ଆଉରଙ୍ଗଜେବଙ୍କର ଲାଭ ହେଲା । ଆଉରଙ୍ଗଜେବ ତ ମୂଳରୁ କୃପଣ ଥିଲେ । ଏତେ ସ୍ୱର୍ଣ୍ଣମୁଦ୍ରା ଅନ୍ତର କରିବାକୁ ରାଜି ହେଉ ନ ଥିଲେ । ଏହି ଗଣନା ହିଁ ତାଙ୍କୁ ସେଥିରେ ସାହାଯ୍ୟ କଲା ।

# ॥ ୨୪ ॥

# ଅଙ୍କ ମେଜିକ୍ ଠାରୁ ଆଉ ବଡ଼ିଆ ମେଜିକ୍ ନାହିଁ

ସ୍କୁଲ୍‌କୁ ଜଣେ ନାମଜାଦା ମେଜିସିଆନ ଆସିଥାନ୍ତି । ଅତି ଚମତ୍କାର ମେଜିସିଆନ୍ । ପିଲ୍‌ମାନଙ୍କୁ ନାନା ପ୍ରକାର ମେଜିକ୍ ଦେଖାଇଲେ । ପିଲ୍‌ମାନେ ମେଜିକ୍ ଦେଖି ଭାରି ଖୁସି । ମେଜିକ୍ ଦେଖା ଶେଷ ହେଲାବେଳକୁ ପିଲ୍‌ମାନେ ଜିଦ୍ ଲଗାଇଲେ ସେମାନଙ୍କୁ ଗୋଟାଏ ମେଜିକ୍ ଶିଖାଇଦେବା ପାଇଁ । ମେଜିସିଆନ୍ ବଡ଼ ଅଡୁଆରେ ପଡ଼ିଲେ । କରିବେ କଅଣ ? ପିଲ୍‌ମାନେ ତ ନଛୋଡ଼ବନ୍ଧା । ସେମାନଙ୍କୁ କିଛି ଗୋଟାଏ ମେଜିକ୍ ଶିଖାଇବାକୁ ପଡ଼ିବ । ସାଧାରଣ ମେଜିକ୍ ତ ପିଲ୍‌ମାନଙ୍କୁ ଶିଖାଇବା ସମ୍ଭବ ନୁହେଁ । ସେ ଭାବି ଭାବି ଠିକ୍ କଲେ ପିଲ୍‌ମାନଙ୍କୁ ଗୋଟିଏ ଅଙ୍କ ମେଜିକ୍ ଶିଖାଇବେ । ସେହିଠୁଁ ସେ ପାଟିକରି କହିଲେ, "ହେଉ, ହେଉ, ପିଲ୍‌ମାନେ ବସ, ଆଉ ପାଟିକର ନାହିଁ । ମୁଁ ତୁମମାନଙ୍କୁ ଗୋଟିଏ ଚମତ୍କାର ଅଙ୍କ ମେଜିକ୍ ଶିଖାଇଦେବି । ଅଙ୍କ ମେଜିକ୍‌ଠାରୁ ଆଉ ବଡ଼ିଆ ମେଜିକ୍ ଦୁନିଆରେ ନାହିଁ ।"

ମେଜିସିଆନ୍‌ଙ୍କ କଥା ଶୁଣି ପିଲ୍‌ମାନେ ଭାରି ଖୁସି ହୋଇଗଲେ । ଅଙ୍କ ମେଜିକ୍ ଶିଖିବେ । ଅଙ୍କ ମେଜିକ୍ ଶିଖିବାପାଇଁ ସେମାନେ ପାଟି ନ କରି ଚୁପ୍‌ଚାପ୍ ବସି ରହିଲେ ।

ପିଲ୍‌ମାନଙ୍କ ଭିତରୁ ତିନୋଟି ବଡ଼ ବଡ଼ ପିଲଙ୍କୁ ବାଛି ମେଜିସିଆନ ନିଜ ପାଖକୁ ଡାକି ଆଣିଲେ । ସେମାନଙ୍କୁ ଗୋଟିଏ ଗୋଟିଏ ଚେୟାରରେ ନିଜ ଚାରିପାଖରେ ବସାଇ-ଦେଲେ । ପ୍ରତ୍ୟେକେ ପରସ୍ପର ଠାରୁ ଛଡ଼ା ଛଡ଼ା । ସମସ୍ତଙ୍କୁ ପଚାରି ବୁଝିନେଲେ, ସେମାନେ ଭଲ ହରଣ ଗୁଣନ କରିପାରନ୍ତି ।

ସେଥିଭିତରୁ ସେ ଜଣକୁ କହିଲେ, "ତୁମେ ମନେ ମନେ ତିନଅଙ୍କ ବିଶିଷ୍ଟ ଗୋଟିଏ ସଂଖ୍ୟା ଭାବ । ସେଇ ସଂଖ୍ୟାଟିକୁ ଗୋଟିଏ କାଗଜରେ ଲେଖି ଦେଖଣାହାରୀଙ୍କ ଭିତରୁ ଜଣକୁ ଦେଇଦିଅ । କହିଦିଅ ସେ ସେହି ସଂଖ୍ୟାକୁ ଗୋପନୀୟ ଭାବରେ ଯେମିତି ରଖେ । ତୁମେ ଯେଉଁ ସଂଖ୍ୟା ଲେଖିଲ, ମୁଁ ନ ଦେଖି କହିଦେଇ ପାରିବି ।"



(ମେକ୍ଲିମିଆନ ପିଲାମାନଙ୍କୁ ଅଙ୍କ ମେଜିକ୍ ଶିଖାଉଛନ୍ତି)

ପିଲଟି ସେହି ଅନୁସାରେ ସଂଖ୍ୟାଟିକୁ ଲେଖି ଅତି ଗୋପନୀୟ ଭାବରେ ଅନ୍ୟ ଜଣକ ପାଖକୁ ପଠାଇଦେଲା । ତତ୍ପରେ ମେକ୍‌ଲିମିଆନ୍ ପିଲଟିକୁ କହିଲେ, "ସେହି ସଂଖ୍ୟାକୁ ତୁମେ ଆଉ ଗୋଟିଏ କାଗଜରେ ଲେଖ । ସେହି ସଂଖ୍ୟାଠାରେ ପୁଣିଥରେ ସେହି ସଂଖ୍ୟାକୁ ଲେଖ । ବର୍ତ୍ତମାନ

ଯେଉଁ ଛଅ ଅଙ୍କ ବିଶିଷ୍ଟ ସଂଖ୍ୟା ହେଲା ତାକୁ ସାତରେ ହର । ହରଣ ଫଳ ଯେଉଁ ସଂଖ୍ୟା ହେବ, ତାକୁ ଦ୍ୱିତୀୟ ଜଣକୁ ଅତି ଗୋପନୀୟ ଭାବରେ ଦେଇଦିଅ । ବହୁସଂଖ୍ୟା ସାତରେ ଛିଡ଼େ ନାହିଁ । କିନ୍ତୁ ଦେଖିବ ଏ ସଂଖ୍ୟାଟି ସାତରେ ନିଶ୍ଚୟ ଛିଡ଼ିବ ।"

ପ୍ରଥମ ଜଣକ ସଂଖ୍ୟାଟିକୁ ହରି ହରଣ ଫଳକୁ ଦ୍ୱିତୀୟ ଜଣକୁ ଦେଇଦେଲା ।

ଦ୍ୱିତୀୟ ଜଣକୁ ମେଜସିଆନ କହିଲେ, "ତୁମେ ସେହି ସଂଖ୍ୟାଟିକୁ ଏଗାରରେ ହର । ଏଗାର ଦ୍ୱାରା ବହୁ ସଂଖ୍ୟା ଛିଡ଼େ ନାହିଁ । କିନ୍ତୁ ଦେଖିବ ଏ ସଂଖ୍ୟାଟି ଅକ୍ଳେଶରେ ଛିଡ଼ିଯିବ । ଯେଉଁ ହରଣ ଫଳ ହେବ, ତାକୁ ତୃତୀୟ ଜଣକୁ ଗୋପନୀୟ ଭାବରେ ଦେଇଦିଅ ।"

ଦ୍ୱିତୀୟ ଜଣକ ଠିକ୍ ସେହିପରି କରି ତୃତୀୟ ଜଣଙ୍କୁ ହରଣ ଫଳ ଦେଇଦେଲା ।

ତୃତୀୟ ଜଣକୁ ମେଜିଆନ୍ କହିଲେ, "ତମେ ଦ୍ୱିତୀୟ ଜଣକଠାରୁ ଯେଉଁ ସଂଖ୍ୟା ପାଇଲ, ତାକୁ ତେର ଦ୍ୱାରା ହର । ତେର ଦ୍ୱାରା ଖୁବ୍ କମ୍ ସଂଖ୍ୟା ଛିଡ଼େ । କିନ୍ତୁ ତୁମେ ଚିନ୍ତା କରନାହିଁ, ଏ ସଂଖ୍ୟାଟି ସହଜରେ ଛିଡ଼ିଯିବ । ବର୍ତ୍ତମାନ ଯେଉଁ ହରଣ ଫଳ ପାଇଲ ତାହାକୁ ଗୋଟିଏ କାଗଜରେ ଲେଖି ମୋତେ ଦେଇଦିଅ । ମୁଁ ଆଖି ପିଛୁଳାକେ କହିଦେବି, ପ୍ରଥମ ଜଣକ ଯେଉଁ ସଂଖ୍ୟା ଲେଖିଥିଲା, ସେହି ସଂଖ୍ୟାଟି କେତେ ।"

ତୃତୀୟ ଜଣକ ମେଜସିଆନ ହାତକୁ ଯେଉଁ ହରଣଫଳ ସଂଖ୍ୟା ବଢ଼ାଇ ଦେଲା, ସେହି ସଂଖ୍ୟାଟି ହେଉଛି ୬୭୩ । ଦର୍ଶକମାନଙ୍କ ଭିତରୁ ଯାହାଠାରେ ଏହି ସଂଖ୍ୟା ଗୋପନୀୟ ଭାବରେ ରଖାଯାଇଥିଲା, ତାକୁ ଡାକି ମେଜସିଆନ କହିଲେ, "ଦେଖ, ତୁମ କାଗଜରେ ଯେଉଁ ସଂଖ୍ୟା ଲେଖା ହୋଇଛି, ତାହା ନିଶ୍ଚୟ ୬୭୩ ।"

ଦେଖଣାହାରି ପକେଟରୁ କାଗଜ କାଢ଼ି ଦେଖିଲେ ଯେ ପ୍ରକୃତରେ ୬୭୩ ଲେଖା ହୋଇଛି । ସେ ସମସ୍ତଙ୍କୁ ସେଇ କାଗଜଟି ଦେଖାଇ ଦେଲେ । ମେଜସିଆନ ଯେଉଁ ସଂଖ୍ୟା କହୁଛି, ତାହା ପୁରାପୁରି ଠିକ୍ ।

ଘନଘନ କରତାଳିରେ ସେହି ଘର କମ୍ପି ଉଠିଲା । ପିଲାମାନେ ମେଜସିଆନର କରାମତି ଦେଖି ଭାରି ଖୁସି ହୋଇଗଲେ ।

ମେଜସିଆନ୍ ତହୁଁ ପିଲାମାନଙ୍କୁ ପାଟିକରି କହିଲେ, "ପିଲାଏ, ମୁଁ ତୁମମାନଙ୍କୁ ଏହି ମେଜକଟି କେମିତି ହେଉଛି ଶିଖାଇ ଦେଉଛି ଶୁଣ—ମୁଁ ପ୍ରଥମ ଜଣକୁ ତିନୋଟି ଅଙ୍କ ବିଶିଷ୍ଟ ଯେ କୌଣସି ସଂଖ୍ୟାଟିଏ ଲେଖିବାକୁ କହିଲି । ସେ ସଂଖ୍ୟାଟି ଲେଖିଲା '୬୭୩' । ସେହି ସଂଖ୍ୟାର ଡାହାଣ ପାଖକୁ ସେହି ସଂଖ୍ୟାଟିକୁ ପୁଣି ଥରେ ଲେଖିବାକୁ କହିଲି । ଫଳରେ ସଂଖ୍ୟାଟି ହେଲା ୬୭୩୬୭୩ । ଏହି ସଂଖ୍ୟାଟି ହେଉଛି ପ୍ରଥମ ସଂଖ୍ୟାର ଅର୍ଥାତ୍ ୬୭୩ର ୧୦୦୧ ଗୁଣ, ନୁହେଁକି ? ବର୍ତ୍ତମାନ ସେହି ସଂଖ୍ୟାକୁ ପ୍ରଥମେ ୭, ପରେ ୧୧, ପରେ ୧୩ ଦ୍ୱାରା ହରଣ କଲେ ୬୭୩ ହେବ, କାରଣ ୭×୧୧×୧୩ର ଗୁଣଫଳ ହେଉଛି ୧୦୦୧ । ତେଣୁ ତୃତୀୟ ଜଣକ ୧୩ ଦ୍ୱାରା ହରଣ କଲେ ଯେଉଁ ସଂଖ୍ୟା ରହିବ ସେହି ସଂଖ୍ୟାଟି ପ୍ରଥମ ଜଣକ ନିଶ୍ଚୟ ଭାବିଥିଲା । ତେଣୁ ତୁମେ ଶେଷ ଜଣକର ହରଣ ଫଳ ଦେଖି ପ୍ରଥମ ଜଣକ ଭାବିଥିବା ସଂଖ୍ୟାଟି ଜାଣିପାରିବ । ତୁମେମାନେ ଘରେ ଯାଇ ସାଙ୍ଗ ସାଥୀଙ୍କୁ ନେଇ ଏହି ମେଜକ୍‌କୁ କରିବ, ଭାରି ମଜା ଲାଗିବ । ଆଜି ଏତିକି ଥାଉ, ଆଉ ଦିନେ ଆଉ ଏକ ମେଜକ୍ ଶିଖାଇ ଦେବି ।"

"ନା ନା, ଆମକୁ ଆଜି ଆଉ ଗୋଟିଏ ମେଜକ୍ ଶିଖାଇବାକୁ ପଡ଼ିବ । ଭାରି ମଜା ଲାଗୁଛି ଆପଣଙ୍କ ମେଜକ୍ ।" ପିଲାଏ ଏତକ କହି ପାଟି କରି ଉଠିଲେ ।

"ନାଇଁ, ନାଇଁ, ପିଲାମାନେ ଆଜି ଏତିକି ଥାଉ । ଆଉ ଦିନେ ତୁମମାନଙ୍କ ସ୍କୁଲକୁ ଆସିବି । ସେଦିନ ବଡ଼ିଆ ବଡ଼ିଆ ଅଙ୍କ ମେଜକ୍ ଶିଖାଇ ଦେବି ।"

"ନାଇଁ, ସେକଥା ହେବନି । ଆଜି ଆମକୁ ଆଉ ଗୋଟାଏ ମେଜକ୍ ଶିଖାଇବାକୁ ପଡ଼ିବ । ନ ଶିଖାଇଲେ ଆମେ ଆପଣଙ୍କୁ ଛାଡ଼ିବୁ ନାହିଁ ।" ପିଲାଏ ପାଟିକରି ଉଠିଲେ ।

ପିଲାମାନଙ୍କୁ ନଛୋଡ଼ବନ୍ଧା ଦେଖି ମେଜସିଆନ୍ ବିଚରା ବାଧ୍ୟ ହେଲେ ଆଉ ଗୋଟିଏ ଅଙ୍କ ମେଜକ୍ ଶିଖାଇବାକୁ ।

ପିଲାମାନଙ୍କ ଆଡ଼କୁ ଅନାଇ ପାଟି କରି କହିଲେ, "ହେଉ ହେଉ ବସ, ପିଲାଏ ପାଟିକର ନାହିଁ । ଏଥର ମୁଁ ଆଉ ଗୋଟାଏ ଅଙ୍କ ମେଜକ୍ ଶିଖାଇ ଦେଉଛି । ଦେଖ, ଏହାପରେ ମୋତେ ଆଉ ଯେମିତି ବାଧ୍ୟ ନ କର । ଏହି ମେଜକଟି ମଧ୍ୟ ଆଉ ଗୋଟିଏ ମଜା ମେଜକ୍ । ତୁମେମାନେ ଖୁବ୍ ସହଜରେ ଶିଖିଯାଇପାରିବ ।"

ଏତକ କହି ସେ ପିଲାଙ୍କ ମେଳରୁ ଗୋଟିଏ ବଡ଼ ପିଲାକୁ ପାଖକୁ ଡାକି ନିକଟସ୍ଥ ଚେୟାରରେ ବସାଇଦେଲେ ।

ମେଜିସିଆନ ପିଲାଟିକୁ ପଚାରିଲେ, "ତୁମେ ମିଶାଣ ଗୁଣନ ଭଲରୂପେ କରିପାର ବାଳକ ? ଅଙ୍କରେ ଦୁର୍ବଳ ନୁହେଁ ତ ?"

ଆଗରେ ବସିଥିବା ପିଲାଟିଏ ପାଟିକରି କହିଲା, "ସେ ଅଙ୍କରେ ଖୁବ୍ ଧୁରନ୍ଧର । ଆମ କ୍ଲାସରେ ସବୁ ଅଙ୍କରେ ଫାଷ୍ଟ ହୁଏ ।"

"ଆଁ, ଅଙ୍କରେ ଫାଷ୍ଟ ହୁଅ ? ବାଃ ବଢ଼ିଆ କଥା । ତୁମେ ତାହେଲେ ବେଶ ଅଙ୍କ କଷି ପାରିବ ।"

"ହେଉ ତୁମ ନାମ କ'ଣ ବାବୁ ?"

"ମନ୍ଦର ।"

"ପୁରା ନାଁ ?"

"ମନ୍ଦରଧର ସାମଲ ।"

"ବେଶ ଠିକ ଅଛି । ହେଉ, ତୁମେ ମନେ ମନେ ଗୋଟିଏ ସଂଖ୍ୟା ଭାବ । ଛୋଟ ସଂଖ୍ୟାଟିଏ ଭାବିବ । କାହିଁକନା ମିଶାଣ ଗୁଣନ କରିବାକୁ ହେବ ।"

"ଭାବିଲ ?"

"ହଁ, ଭାବିଲି ।"

"ହେଉ, ଏହି କାଗଜଟି ଆଉ ପେନସିଲଟି ନିଅ । ଭାବିଥିବା ସଂଖ୍ୟାଟିକୁ ଅତି ଗୋପନରେ ଲେଖି, ତୁମ ସାଙ୍ଗ ହାତକୁ ବଢ଼ାଇ ଦିଅ ଗୋପନରେ ରଖିବା ପାଇଁ । ତୁମେ କଅଣ ଲେଖିଲ ମୁଁ ନ ଦେଖି କହିଦେବି ।"

ମନ୍ଦରଧର ଠିକ ସେଇଆ କଲା । ଲେଖି ସାରି କାଗଜଟିକୁ ବନ୍ଦକରି ତା ସାଙ୍ଗ ହାତକୁ ବଢ଼ାଇଦେଲା ।

"ହଉ, ମନ୍ଦରଧର, ତୁମେ ଯେଉଁ ସଂଖ୍ୟାଟିକୁ ଭାବିଥିଲ, ସେହି ସଂଖ୍ୟାକୁ ପାଞ୍ଚରେ ଗୁଣ । ଦେଖ ଭୁଲ କରିବ ନାହିଁ ।"

"ଗୁଣିଲ ?"

"ହଁ, ଗୁଣିଲି ।"

"ସେଥିରେ ଛ' ମିଶାଅ । ଦେଖ, ଭୁଲ କରିବନି ।"

"ହଁ, ମିଶାଇଲି ।"

"ସେହି ମିଶାଣ ଫଳକୁ ଚାରିରେ ପୁଣି ଗୁଣ ।"

"ହଁ, ଗୁଣିଲି ।"

"ଭୁଲ କରିନାହଁ ତ ? ପୁଣି ସେଥିରେ ୯ ମିଶାଅ ।"

"ହଁ, ମିଶାଇଲି ।"

"ସେହି ସଂଖ୍ୟାକୁ ପୁଣି ୫ରେ ଗୁଣ । ଫଳ କେତେ ହେଲା କୁହ ?"

"ଗୁଣଫଳ ହେଲା ୬୬୫ ।"

"ତେବେ ତୁମେ ପାଞ୍ଚ ଭାବିଥିଲ । ନୁହେଁ ?"

"ହଁ, ଠିକ ଅଛି ।"

ସଂଖ୍ୟା ଲେଖା ହୋଇଥିବା କାଗଜଟିକୁ ଯେଉଁ ପିଲାଟି ଧରିଥିଲା, ସେ ଉଠିପଡ଼ି କାଗଜଟିକୁ ଖୋଲି ସମସ୍ତଙ୍କୁ ଦେଖାଇଦେଲା । ସେଥିରେ ବି ପାଞ୍ଚ ଲେଖା ହୋଇଥିଲା ।

ଏହା ଦେଖି ପିଲାଏ କରତାଳି ମାରି ମେଜସିଆନଙ୍କ ମେଜିକ ଦେଖାକୁ ତାରିଫ ଜଣାଇଲେ ।

ତାଳି ଯେମିତି କମିଲା, ଗୋଟିଏ ପିଲା ପାଟି କରି କହିଲା, "ଆମକୁ ଏ ମେଜିକଟା ବି ଶିଖାଇ ଦିଅନ୍ତୁ ।"

ମେଜସିଆନ୍ ପଚାରିଲେ, "ପିଲାଏ, ତୁମେ ସମସ୍ତେ କ'ଣ ଏହି ମେଜକ୍ ଶିଖିବ ?"

ଏକ ସ୍ୱରରେ ପାଟି ଉଠିଲା, "ହଁ, ଆମେ ସମସ୍ତ ଶିଖିବୁ । ଆମକୁ ଶିଖାଇ ଦିଅନ୍ତୁ ।"

ଦେଖ, ତୁମେ ଜଣେ ପିଲାକୁ ଗୋଟିଏ ସଂଖ୍ୟା ଭାବିବାକୁ କହିବ । ତା'ପରେ ତାକୁ କହିବ ସେହି ସଂଖ୍ୟାକୁ ପାଞ୍ଚରେ ଗୁଣିବ । ତତ୍ପରେ ଛ' ମିଶାଇବ । ସେହି ମିଶାଣ ଫଳକୁ ପୁଣି ଚାରିରେ ଗୁଣିବ । ପୁଣି ସେଥିରେ ନଅ ମିଶାଇବ । ସେହି ମିଶାଣଫଳକୁ ପୁଣି ପାଞ୍ଚରେ ଗୁଣିବ । ଯେଉଁ ଗୁଣଫଳ ପାଇବ ସେଥିରୁ ୧୬୫ ବାଦ୍ କର ଯେଉଁ ସଂଖ୍ୟା ରହିବ ତାକୁ ଶହେରେ ହରଣେ ଭାବିଥିବା ସଂଖ୍ୟାଟି ବାହାର ପଡ଼ିବ ।

ମନେକର ତୁମେ ଭାବିଥିଲ ଗୋଟିଏ ସଂଖ୍ୟା, ତାକୁ 'n' ଧର । ମେଜସିଆନ ବ୍ଲାକ୍‌ବୋର୍ଡ଼ଠାକୁ ଯାଇ କଷି ପିଲାମାନଙ୍କୁ ଦେଖାଇ ଦେଲେ ଭାବିଥିବା ସଂଖ୍ୟାଟି କେମିତି ବାହାର ପଡ଼ୁଛି ।

(1) $n \times 5 = 5n$

(2) $5n + 6$

(3) $(5n+6) \times 4 = 20n + 24$

(4) $(20n+24) + 9 = 20n + 33$

(5) $(20n+33) \times 5 = 100n + 165$

(6) $\frac{100n + 165 - 165}{100} = n$

ବୁଝିପାରୁଛ ବୋଧହୁଏ ।

ହେଉ, ଆଉ ଥରେ ପ୍ରକୃତ ସଂଖ୍ୟା ନେଇ ବୁଝାଉଛି ଶୁଣ । ମନେକର, ତୁମେ ମନରେ ଭାବିଲ ୮, । ସଂଖ୍ୟାଟି କେମିତି ମନକୁମନ ବାହାର ଆସୁଛି ଦେଖ ।

ପ୍ରଥମେ ୮କୁ ୫ରେ ଗୁଣ । ତେଣୁ ୮ × ୫ = ୪୦ ।

ସେଥିରେ ୬ ମିଶାଅ, ତେଣୁ ୪୦ + ୬ = ୪୬ ।

ତାକୁ ପୁଣି ୪ରେ ଗୁଣ, ତେଣୁ ହେଲା ୪୬ × ୪ = ୧୮୪

ସେଥିରେ ପୁଣି ୯ ମିଶାଅ

ତେଣୁ ହେଲା ୧୮୪ + ୯ = ୧୯୩

ବର୍ତ୍ତମାନ ଏହାକୁ ୫ରେ ଗୁଣ

ତେଣୁ ହେଲା ୧୯୩ × ୫ = ୯୬୫

ସେଥିରୁ ୧୬୫ ବିୟୋଗ କର ୧୦୦ ଦ୍ୱାରା ହର

$$\frac{୯୬୭ - ୧୬୫}{୧୦୦} = ୮$$

ଦେଖିଲ ସଂଖ୍ୟାଟି କେମିତି ମନକୁମନ ବାହାରି ଆସିଲା ?

ତୁମେମାନେ ଏଥର ଘରକୁ ଯାଅ । ଏହି ମେଜିକଟିକୁ ନିଜ ନିଜ ଭିତରେ କରିବ । ଖୁବ ମଜା ଲାଗିବ ।

ପିଲାଏ ଖୁସି ହୋଇ ଘରକୁ ଫେରିଲେ । ମନ ଭରି ଖୁସି, ଦୁଇ ଦୁଇଟା ଅଙ୍କ ମେଜିକ୍ ସେମାନେ ଶିଖିଲେ ।

॥ ପାଞ୍ଚ ॥

# କିଏ ବେଶୀ ଭାରୀ ?

# ମହଣେ ତୁଳା ନା ମହଣେ ଲୁହା ?

ସି. ଏ. ଟି. କେଟ୍, କେଟ୍—ମାନେ ବିରାଡ଼ି

ବି. ଏ. ଟି. ବେଟ୍, ବେଟ୍—ମାନେ ବାଦୁଡ଼ି

ଜି. ଇ. ଟି. ଗେଟ୍, ଗେଟ୍—ମାନେ ପାଇବା

ଏନ୍. ଇ. ଟି. ନେଟ୍, ନେଟ୍—ମାନେ ଜାଲ

ପି. ଇଉ. ଟି. ପୁଟ୍, ପୁଟ୍—ମାନେ ରଖିବା

ବି. ଇଉ. ଟି. ବୁଟ୍, ବୁଟ୍—ମାନେ କିନ୍ତୁ

"ନାଁରେ ମଣ୍ଟୁ, ବି. ଇଉ. ଟି. ବୁଟ୍ ନୁହେଁ, ବି. ଇଉ. ଟି. ହେଉଛି "ବଟ୍ ।" ମୋ ଭୁଲକୁ ସଂଶୋଧନ କରୁ କରୁ ଚିନୁଅପା ମୋ ପଢ଼ାଘର ଭିତରକୁ ପଶି ଆସିଲେ ।

"କିରେ, ଆଜି ଖୁବ ଜୋର୍‌ରେ ତ ପଢ଼ାପଢ଼ି ଚାଲିଛି ଦେଖୁଛି ? ପରୀକ୍ଷା କ'ଣ ପାଖ ହୋଇ ଆସିଲାଣି କିରେ ?"

"ହଁ ରୁନୁଅପା, ଇଂରାଜୀ ଶବ୍ଦର ଓଡ଼ିଆ ଅର୍ଥ ଘୋଷିବାରେ ମୁଁ କେମିତି ଲାଗି ଯାଇଛି ଦେଖୁନାହାଁ ।"

ରୁନୁଅପାଙ୍କୁ ଦେଖି ମୋ ମନ ଭାରି ଖୁସି ହୋଇଗଲା । ରୁନୁଅପା ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଡାକ୍ତରୀ ପଢ଼ନ୍ତି । ତାଙ୍କ ଘର ଆମ ଗାଁ ଆଡ଼େ । ଆମ ଘରକୁ ଭାରି ଯା-ଆସ କରନ୍ତି । ପ୍ରତି ସପ୍ତାହରେ ଆମ ଘରକୁ ନ ଆସିଲେ ବୋଉ ମନକଷ୍ଟ କରେ । ତାଙ୍କୁ ବାବାଙ୍କ ହାତରେ, ନଇଲେ ସ୍ୱାମୀ ତା ହାତରେ ଡକାଇ ପଠାଏ । ରୁନୁଅପାଙ୍କୁ ଡାକିବା କଥା କହିଲେ ବାବା ଅାଗ ତିଆରି । ରୁନୁଅପା ମୋତେ ଭାରି ଭଲ ପାଆନ୍ତି । ଖୁବ୍ ସ୍ନେହ କରନ୍ତି ମଧ୍ୟ ।

"ସେ ଘର ଭିତରକୁ ପଶିଆସି ମୋ ଟେବୁଲ ପାଖରେ ବସିପଡ଼ି ମୋ ବହିକୁ ଅନାଇ କହିଲେ, "ଆରେ ଭାରି ମନ ଦେଇ ପଢ଼ୁଛୁ ନୁହେଁ ? କ'ଣ ଇଂରାଜୀ ପଢ଼ା ଚାଲିଛି କରେ ?"

ଆମ ପରୀକ୍ଷା ପରା ଆଉ ଅଳ୍ପ ଦିନ ରହିଲା ରୁନୁଅପା । ନ ପଢ଼ିଲେ ପାଶ୍ କରିବି କେମିତି କହିଲ ? ଆମର ପହିଲାଦିନ ପରା ଇଂରାଜୀ ପରୀକ୍ଷା ଅଛି ।"

"ରୁନୁଅପା, ଗୋଟିଏ କଥା ମୁଁ ବୁଝି ପାରୁନ । ପି. ଇଉ. ଟି. ହେଉଛି ପୁଟ୍ ବି. ଇଉ. ଟି. ବୁଟ୍ ନ ହୋଇ କେମିତି ବଟ୍ ହେଲା ? ସେହିଭଳି ଆଇ. ଏସ୍. ହେଉଛି ଇଜ୍ । ଏଲ୍. ଏ. ଏନ୍. ଡ଼ି. ହେଉଛି ଲାଣ୍ଡ୍ । କିନ୍ତୁ ଆଇ. ଏସ୍. ଏଲ୍. ଏ. ଏନ୍. ଡ଼ି. ତ ଇଜ୍‌ଲେଣ୍ଡ୍ ନ ହୋଇ ଆୟୁଲେଣ୍ଡ୍ କାହିଁକି ହେଲା ! ଯା କୁହ ଏ ଇଂରାଜୀ ଭାଷା ଭାରି କଷ୍ଟ । ଉଚ୍ଚାରଣ ତ ମାରାତ୍ମକ ହେଉଛି । ମାଷ୍ଟ୍ରେ କ୍ଲାସ୍‌ରେ ଭାରି ବିଗୁଡ଼ୁଛନ୍ତି । ଯାହା କୁହ ରୁନୁଅପା, ଏ ଭାଷାର କିଛି ଗାଣ୍ଡି ମୁଣ୍ଡ ନାହିଁ ।"

"ଆରେ ସେଇ ତ ହେଉଛି ଏହି ଇଂରାଜୀ ଭାଷାର ବାହାଦୁରି । ପ୍ରଥମରୁ ଏହି କେତେଟା କଥା ମନେ ରଖିଦେଲେ, ବିଶେଷ କଷ୍ଟ ହେବନି ବଡ଼ କାଳକୁ । ବେଶ୍, ମନଦେଇ ପଢ଼ ।" ରୁନୁଅପା ମୋତେ ଏମିତି ଉତ୍ସାହିତ କରୁଥାନ୍ତି, ବୋଉ ପଡ଼ାଘର ଭିତରକୁ ପଶି ଆସିଲା ।

"ଆରେ ରୁନୁ ଯେ, ତୁମେ କେତେବେଳୁ ଆସିଲଣି ଶୁଣେ ? ଘରକୁ ନ ଯାଇ ଏ ଟଗଲା ଟୋକାଟା ପାଖରେ ବସି କ'ଣ ପଚାରୁଛ ?"

"ନାଇଁ ଅପା, କ'ଣ କି ମଣ୍ଟୁକୁ ପଚାରୁଥିଲି ସେ କ'ଣ ପଢ଼ୁଛି ବୋଲି ।" ମୋ ଆଡ଼କୁ ଅନାଇ କହିଲେ, "ହଇରେ ମଣ୍ଟୁ, ତୁ ତ ଖୁବ୍ ପଢ଼ୁଛୁ ପରୀକ୍ଷା ପାଇଁ, ନୁହେଁ ? ମୁଁ ଗୋଟାଏ ପ୍ରଶ୍ନ ପଚାରିବି, କହି ପାରିବୁ ?"

"ପ୍ରଶ୍ନ ପଚାରିବ ? ମୋତେ ?" ଆଶ୍ଚର୍ଯ୍ୟ ହୋଇଗଲି । କହିଲି, "ହଉ ପଚାରୁନ, ମୁଁ କ'ଣ କହି ପାରିବିନି ଯେ ?"

"ହଉ କହିଲୁ, କଉ ମାଛ ଗଛକୁ ଚଢ଼େ ?"

"ମୁଁ କ'ଣ ଜାଣିନି ଯେ ? ସେଦିନ ପରା ବୋଉ କହୁଥିଲା କଉ ମାଛ ଗଛକୁ ଚଢ଼େ ।"

"ଆରେ, ମୁଁ ତ ତତେ ଯାହା ପଚାରିଲି, ତୁ ତ ମତେ ପୁଣି ସେଇଆ ପଚାରିଲୁ । ଆରେ ମୋ ପ୍ରଶ୍ନ ହେଉଛି, କଉ ମାଛ ଗଛକୁ ଚଢ଼େ ?"

"କଉ ମାଛ ଗଛକୁ ଚଢ଼େ ।" ମୁଁ କହିଲି ।

"ଆରେ ଫେର୍ ସେଇ କଥା ?"

"ହଁ, କଉ ମାଛ ଗଛକୁ ଚଢ଼େ ।" ମୁଁ ପୁଣି କହିଲି ।

ଆମ ଦୁଇଜଣଙ୍କ ପ୍ରଶ୍ନ ଓ ଉତ୍ତରକୁ ଶୁଣି ବୋଉ ହସି ହସି କହିଲା, "ତୁମେ ଦୁଇଜଣ ଇମିତି ପଚରାପଚରି ହେଉଥିବ, ଉତ୍ତର ମିଳିବ କେମିତି ? ପ୍ରଶ୍ନ ଯାହା ଉତ୍ତର ତ ସେଇଆ । ମଣ୍ଟୁ କ'ଣ ବୁଝିପାରିଲାନି ଯେ ଏହି ପଚରାପଚରିର ପରିସମାପ୍ତି ଘଟିବ ?

ବୋଉ କଥା ଶୁଣି ହଠାତ୍ ମୋର ଖିଆଲ ପଡ଼ିଗଲା । ଆରେ ସତେ ତ ! ଛୁନୁ ଅପା ଯାହାକୁ ପଚାରୁଛନ୍ତି, ସେଇ ତ ହେଉଛି ଉତ୍ତର । ମୁଁ କେଡ଼େ ବୋକାଙ୍କ ଭଳିଆ ଉତ୍ତର ଦେଇ ଚାଲିଛି ।

"ହଁ, ହଁ, ଏଥର ଜାଣିଗଲି ଛୁନୁ ଅପା ଜାଣିଗଲି ।" କହି ହସି ହସି ଗଡ଼ିଗଲି ।

ଛୁନୁଅପା ଓ ବୋଉ ନ ହସି ରହି ପାରିଲେନି ।

"ହଉ ମଣ୍ଟୁ, ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଦେବୁ ?" ପୁଣି ଛୁନୁଅପା ପଚାରିଲେ ।

କହିଲୁ କଏ ? "ଟିକି ଚଢ଼େଇ, ଟିକିକ ପାଣିରେ ବୁଡ଼ି ମରଇ ।"

"ହଁ, କହିପାରିବି ଲୁନୁ ଅପା 'ଲୁଣ' ।"

"ଠିକ୍ କହୁଛୁ ।" ହେଉ କହିଲୁ, "ମୋତେ ଯେତେ ମାଠିବୁ ମାଠ,
ମୁଁ ସେଇ ଦରପୋଡ଼ା କାଠ ।"

"ଅଙ୍ଗାର"—ଉତ୍ତର ଦେଲି ।

"ଠିକ୍ ।" ହେଉ କହିଲୁ—"କଣ୍ଟକରୁ ଆସିଲା ନାଲିଆ ଘୋଡ଼ା
ଏକ ଦିଆଣକେ ହୋଇଲା ବୁଢ଼ା ।"

"କଦଳୀ ଗଛ" ।

"ଠିକ୍ ।"

"ଏଥର ଗୋଟିଏ କଡ଼ା ପ୍ରଶ୍ନ ପଚାରିବି, ଉତ୍ତର ଦେଇ ପାରିବୁ ତ ?"

"ହଁ, ଦେଇପାରିବି ।" ଉତ୍ତର ଦେଲି ।

"ହଉ କହିଲୁ, ମହଣେ ତୁଳା ବେଶୀ ଭାରି, ନା ମହଣେ ଲୁହା ବେଶୀ ଭାରି ?"

"ଓଃ, ଏଇ ପ୍ରଶ୍ନଟା, ମୁଁ ଯେମିତି କହି ପାରିବିନି । ଭାରି ପ୍ରଶ୍ନ ଗୋଟାଏ ତ ?" ବହୁତ ଭାବି ଭାବି କହିଲି, "କାହିଁକି, ମହଣେ ଲୁହା ତ ନିଶ୍ଚେ ବେଶୀ ଭାରି ହେବ ।"

"ବାଃ, ଭଲ ଉତ୍ତରଟାଏ ଦେଲୁରେ ମଣ୍ଟୁ । ଏଥିପାଇଁ କହୁଥିଲୁ ନା ଭାରି ପ୍ରଶ୍ନଟାଏ ବୋଲି ।"

ମନେ ମନେ ଭାବିଲି, ମୋ ଉତ୍ତରରେ ଆଉ କେଉଁଠି ଭୁଲ ରହିଗଲା ନା କଅଣ ? ଲୁନୁଅପା କ'ଣ ଏମିତି କହିଲେଣି । ମୋ ଉତ୍ତର ଠିକ୍ କି ଭୁଲ୍ ଜାଣିବା ପାଇଁ ଲୁନୁଅପାଙ୍କ ମୁହଁକୁ ଅନାଇ ରହିଲି ।

କଏ ବେଶୀ ଭାରି ? ମହଣେ ତୁଳା ନା ମହଣେ ଲୁହା ?

ବୋଉ କହିଲା, "ଆଚ୍ଛା ପ୍ରଶ୍ନଟାଏ ପଚାରିଲ ଚୁନୁ । ତା ମୁଣ୍ଡରେ କ'ଣ ଏପର୍ଯ୍ୟନ୍ତ ପଶିଲାଣି ଏ ପ୍ରଶ୍ନର ତାତ୍ପର୍ଯ୍ୟ କଅଣ । ସିଏ ତ ଘୂରି ହେଉଛି ଗୋଟିଏ କଥା ନେଇ, ଲୁହା ଭାରି ନା ତୁଳା ଭାରି । ସିଏ ତୁମ ପ୍ରଶ୍ନକୁ କ'ଣ ମୁଣ୍ଡକୁ ନେଲାଣି କି ?"

ଚୁନୁଅପା ବୋଉ ଆଡ଼କୁ ଅନାଇ ହସିଲେ । କହିଲେ, "ମଣ୍ଟୁ ବୟସର ପିଲାଏ ଏ ପ୍ରଶ୍ନଟାର ଅର୍ଥ ଠିକ୍ ଧରି ପାରିବେ କି ନାହିଁ ସନ୍ଦେହ ।" ମୋତେ ବୁଝାଇବା ପାଇଁ ମୋ ଆଡ଼କୁ ଅନାଇ କହିଲେ, "ତୁ ମୋ ପ୍ରଶ୍ନଟା ବୁଝିପାରିଲୁନରେ ମଣ୍ଟୁ । ତେଣୁ ତୁ ଠିକ୍ ଉତ୍ତର ଦେଇ ପାରିଲୁନି । ମୁଁ ପଚାରୁନ ତୋତେ ଲୁହା ବେଶୀ ଭାରି, କି ତୁଳା ବେଶୀ ଭାରି । ମୁଁ ପଚାରୁଛି ମହଣେ ତୁଳା ବେଶୀ ଭାରି ନା ମହଣେ ଲୁହା ବେଶୀ ଭାରି । ତୁ ଦେଖ୍ ଗୋଟିଏ ପାଖରେ ମହଣେ ଓଜନର ତୁଳା ଅଛି । ଅନ୍ୟ ପାଖରେ ମହଣେ ଓଜନର ଲୁହା ଅଛି । ମୋ ପ୍ରଶ୍ନ ହେଲା, ଏ ଦୁଇଟି ଭିତରୁ କଏ ଅଧିକ ଭାରି ? ଦୁଇଟିର ଓଜନ ତ ମହଣେ ଲେଖାଏଁ, ତେଣୁ ଦୁଇଟିର ଓଜନ ସମାନ ହେବ । ମହଣେ ଲୁହା ଯେତିକି ଓଜନ ହେବ, ମହଣେ ତୁଳା ଠିକ୍ ସେତିକି ଓଜନ ହେବ । ବୁଝିଲୁ ଏବେ ।"

ଚୁନୁଅପା ମୋତେ ଏମିତି ବୁଝାଇ ଚାଲିଛନ୍ତି, ଦାଦା ଆମ କୋଠରି ଭିତରକୁ ପଶିଆସିଲେ । ପୁଣି ଆସୁଁ ଆସୁଁ କହିଲେ, "କିରେ ମଣ୍ଟୁ, ଆଜି କ'ଣ ତୋ ପଢ଼ା ଘରେ ବେଶ୍ ବଡ଼ ଆଲୋଚନା ସଭାଟିଏ ବସିଛି । ଆଉ ଏ ମେଡ଼ିକେଲ କଲେଜର ଡାକ୍ତରାଣୀ କେଉଁ ରୋଗ କଥା କହୁଛନ୍ତି କିରେ ଏଠି ?"

"ନାଇଁ ଦାଦା, ଚୁନୁଅପା ରୋଗ କଥା କହୁନାହାନ୍ତି । ସେ ମୋତେ ଗୋଟିଏ ବଢ଼ିଆ ପ୍ରଶ୍ନ ପଚାରୁଥିଲେ । ସିଏ ଯେଉଁ ପ୍ରଶ୍ନ ପଚାରିଲେ, ମୁଁ ତାର ଠିକ୍ ଉତ୍ତର ଦେଇ ପାରିଲିନି । ତୁମେ କ'ଣ ଉତ୍ତର ଦେଇପାରିବ ଦାଦା ? କହିଲ ଦାଦା, ମହଣେ ତୁଳା ବେଶି ଭାରି, ନା ମହଣେ ଲୁହା ବେଶୀ ଭାରି ?"

"ହୁଁ, ତୋ ଚୁନୁଅପା ଗୋଟାଏ ପ୍ରଶ୍ନ ପଚାରିବ, ମୁଁ ତା'ର ଉତ୍ତର ଦେବି । ମେଡ଼ିକେଲ କଲେଜ ପିଲାଏ କ'ଣଟାଏ ଜାଣିଛନ୍ତି ଯେ ରେଭେନ୍‌ସା କଲେଜ ପିଲାଙ୍କୁ ପଚାରିବେ । ପୁଣି ସେମାନେ ତା'ର ଉତ୍ତର ଦେବେ ।"

"ନାଇଁ ଦାଦା, ତୁମେ କହିଲ, କଏ ବେଶୀ ଭାରି ?"

"ତୁ କ'ଣ ଉତ୍ତର ଦେଲୁ ଶୁଣେ ?"

"ମୁଁ କହିଲି ମହଣେ ଲୁହା ଅଧିକ ଭାରୀ ।"

"ତୁ ତ ଠିକ୍ ଉତ୍ତର ଦେଇଥିଲୁରେ ମଣ୍ଟୁ, କଏ କହିଲା ତୋ ଉତ୍ତର ଭୁଲ ବୋଲି ।"

"ରୁନୁଅପା କହିଲେ ।"

"ହୁଁ, ରୁନୁଅପା କହିଲେ । ମେଡ଼ିକେଲ କଲେଜରେ ପଢ଼ିଲେ ସାଧାରଣଜ୍ଞାନ ଗୁଲିଯାଏ । ସେ ତୋ ଭୁଲଟା ବାହାର କରିବେନି କଅଣ ?"

ରୁନୁଅପା ଶୁଣୁ ଶୁଣୁ କହିଲେ, "ମେଡ଼ିକେଲ କଲେଜ ପିଲାଙ୍କର ତ ସାଧାରଣ ଜ୍ଞାନ ନାହିଁ । ହେଉ, ରେଭେନ୍‌ସା କଲେଜ ପିଲାଙ୍କର ସାଧାରଣ ଜ୍ଞାନ କ'ଣ କହୁଛି ମହଣେ ତୁଳାଠାରୁ ମହଣେ ଲୁହା ଅଧିକ ଭାରୀ ?"

"ନିଶ୍ଚୟ, କହିବାକୁ ଅଛି ? ମୁଁ ତ କହିବି, ମହଣେ ତୁଳ‌ାଠାରୁ ମହଣେ ଲୁହା ନିଶ୍ଚୟ ଅଧିକ ଭାରୀ । ଖାଲି କହିବିନି, ପରୀକ୍ଷା କରି ଦେଖାଇ ଦେଇପାରିବି ମଧ୍ୟ ।"

"ପରୀକ୍ଷା କରି ଦେଖାଇବ, ନା ମେଜିକ୍ କରି ଦେଖାଇବ ?"

"ଖାଣ୍ଟି ନିର୍ଭେଜାଲ ପରୀକ୍ଷା, ମେଜିକ୍ ନୁହେଁ ।" ଦାଦା କହିଲେ ।

"କଏ ଜାଣେ, ରେଭେନ୍‌ସା କଲେଜ ପିଲାଏ କେତେ ଭେଲିକି କରିପାରନ୍ତି ? ଗୋଟିଏ ତରାଜୁର ଗୋଟିଏ ପାଖରେ ମହଣେ ତୁଳା ଓ ଅନ୍ୟ ପଟରେ ମହଣେ ଲୁହା ନେଇ ଲୁହା ଥିବା ତରାଜୁଠାରୁ ଅଳ୍ପ ଦୂରରେ ତଳେ ଖଣ୍ଡିଏ ଚୁମ୍ବକ ଲୁଚାଇ ଥୋଇ ଦେଲେ ତ ଲୁହା ଥିବା ତରାଜୁଟି ତଳକୁ ତଳି ପଡ଼ିବ । କହିବ କ'ଣ ନା ମହଣେ ଲୁହା ଅଧିକ ଭାରୀ । ଏଇଆ ତ କରି ତୁମେ ରେଭେନ୍‌ସା ପିଲାଏ ବାହାଦୁରୀ ନେବ ?"

"ଆମ ପାଖରେ ସେମିତି ଠକାଠକି କାରବାର ନାହିଁ । ଠକାଠକି କାରବାର ସବୁ ତୁମ ମେଡ଼ିକେଲ କଲେଜରେ ଚଳେ । ଆମ ରେଭେନ୍‌ସା କଲେଜରେ ନୁହେଁ । ଚାଲ, ଆମ ରେଭେନ୍‌ସା କଲେଜ ବିଜ୍ଞାନାଗାରକୁ । ତୁମ ଆଖି ଆଗରେ ପରୀକ୍ଷା କରି ଦେଖାଇ ଦେବି, ମହଣେ ତୁଳା ଅଧିକ ଭାରୀ କି ମହଣେ ଲୁହା ଅଧିକ ଭାରୀ । ଠକାଠକି ପରୀକ୍ଷା ମୋଟେ

ନୁହେଁ । ଇଚ୍ଛା କଲେ, ତୁମେ ବି ନିଜେ ସେ ପରୀକ୍ଷା କରି ନିଜେ ଦେଖିପାରିବ । ଆଗେ ନିଜେ ଆଖିରେ ଦେଖିବ, ତା'ପରେ ଉତ୍ତର ଦେବ ।"

ତହିଁ ଆରଦିନ ରବିବାର । ଦାଦା କଲେଜକୁ ଯାଇ କଲେଜର ସହକାରୀମାନଙ୍କୁ କହିଦେଇ ଆସିଥାନ୍ତି ଆମ ଯିବା କଥା । ରୁନୁଅପା, ବୋଉ ଓ ମୁଁ ଦାଦାଙ୍କ ସହିତ ଯିବା ଠିକ୍ ହୋଇଥାଏଁ । ଆମେ ସମସ୍ତେ ସାଙ୍ଗ ହୋଇ ସଅଳ ସଅଳ କଲେଜ ଅଭିମୁଖେ ବାହାରି ପଡ଼ିଲୁ ।

କଲେଜରେ ପହଞ୍ଚିଲା ବେଳକୁ କେତେଜଣ ସହକାରୀ ଆସି ଦାଦାଙ୍କ ପାଖରେ ପହଞ୍ଚିଗଲେ । ପରୀକ୍ଷାଗାରରେ ଗୋଟିଏ କୋଠରୀ ଖୋଲିଗଲା । ଦେଖିଲୁ ଗୋଟିଏ ଟେବୁଲ ଉପରେ ଏକ ନିକିତି ଥୁଆ ହୋଇଛି ଏକ କାଚବାକ୍ସ ଭିତରେ । ନିକିତିର ଗୋଟିଏ ପାଖରେ ଗୋଟିଏ ଲୁହା ବଟକରା ଓ ଅନ୍ୟ ପାଖରେ ମେଞ୍ଚାଏ ତୁଳା ଥୁଆ ହୋଇଥାଏ ।

ଦାଦା ଆମକୁ ନେଇ ଟେବୁଲ ପାଖରେ ପଡ଼ିଥିବା ଚେୟାରରେ ବସାଇଦେଲେ । ମୁଁ, ମୋ ପାଖକୁ ରୁନୁଅପା, ତା ପାଖକୁ ବୋଉ । ଦାଦା ଟେବୁଲ ପାଖରେ ଠିଆ ହୋଇଥାନ୍ତି ।

ରୁନୁଅପାଙ୍କୁ ଡାକିନେଇ ଦାଦା କହିଲେ, "ଚାରିପାଖ ଭଲକରି ଦେଖିନିଅ ରୁନୁ, କେଉଁଠି ଚୁମ୍ବକ କି ଆଉ କିଛି ଲୁଚି ହୋଇଛି କି ନାହିଁ ।"

ରୁନୁଅପା କୌତୂହଳୀ ହୋଇ ଏଆଡ଼ ସେଆଡ଼କୁ ଅନାଇ କହିଲେ, "ନାଇଁ ଠିକ୍ ଅଛି; ତୁମେ ଏଥର ତୁମ ପରୀକ୍ଷା ଆରମ୍ଭ କର ।"

"ଦେଖ ରୁନୁ, ଏହି ଯନ୍ତ୍ରରେ ତ ମହଣଟାଏ ପକାଇ ହେବନି । କାରଣ ଏହା ଏକ ସୂକ୍ଷ୍ମ ଯନ୍ତ୍ର । ମୁଁ ପାଞ୍ଚ ଗ୍ରାମ ଓଜନଟିଏ ପକାଇ ସେହି ଅନୁସାରେ ଦେଖାଇ ଦେଉଛି । ମହଣେ ପାଇଁ ତାହା ହିଁ ପ୍ରଯୁଜ୍ୟ ହେବ ।"

ଏତକ କହି ଦାଦା ଗୋଟିଏ ପାଖରେ ପାଞ୍ଚଗ୍ରାମ୍ଟିଏ ଓ ଅନ୍ୟ ପାଖରେ କିଛି ତୁଳା ପକାଇ ସମତୁଳ କରିବା ପୂର୍ବରୁ ନିକିତି ଥିବା ବାକ୍ସଟିକୁ ବନ୍ଦକରି କ'ଣ ଏକ ଯନ୍ତ୍ର ଚଳାଇ ଦେଲେ । କିଛି ସମୟ ଯନ୍ତ୍ର ଚାଲିବା ପରେ ତରାଜୁଟିକୁ ଉଠାଇଲାରୁ ଦେଖାଗଲା ଯେ ତରାଜୁଟି ସମାନ ଭାବରେ ଦୁଇପାଖକୁ ଝୁଲୁଅଛି ।

ରୁନୁଅପାଙ୍କୁ ଲକ୍ଷ୍ୟକରି ଦାଦା କହିଲେ, "ଦେଖୁଛ ରୁନୁ, ବର୍ତ୍ତମାନ ଏହିତକ ତୁଳାର ଓଜନ ହେଉଛି ଠିକ୍ ପାଞ୍ଚଗ୍ରାମ୍ ।"

ତତ୍‌ପରେ ସେ ସେହି ନିକିତିରୁ ତୁଳା କାଢ଼ିଦେଇ ତୁଳା ଜାଗାରେ ପାଞ୍ଚଗ୍ରାମ୍ ଓଜନର ଲୁହା ଖଣ୍ଡିଏ ପକାଇ ଓଜନ କଲେ । ଲୁହା ଖଣ୍ଡକର ଓଜନ ମଧ୍ୟ ଠିକ୍ ପାଞ୍ଚଗ୍ରାମ୍ ହେଲା ।




(ଶୂନ୍ୟବାକ୍‌ସ ଭିତରେ ପାଞ୍ଚଗ୍ରାମ୍ ଓଜନର ତୁଳା ଓଜନ କରାଯାଉଛି)

ରୁନୁଅପା ଓ ବୋଉକୁ ଲକ୍ଷ୍ୟକରି କହିଲେ, "ବର୍ତ୍ତମାନ ଏହି ତୁଳାର ଓଜନ ପାଞ୍ଚ ଗ୍ରାମ୍, ଲୁହାର ଓଜନ ମଧ୍ୟ ପାଞ୍ଚଗ୍ରାମ୍ । ଏଥିରେ ତ ତୁମର କାହାର ସନ୍ଦେହ କରିବାର କିଛି ନାହିଁ । ଗୁରିଆଡ଼ ଟିକଏ ଭଲକରି ଦେଖିନିଅ ରୁନୁ, କେଉଁଆଡ଼େ କିଛି ହାତସଫେଇ ନାହିଁ ତ ।"

ରୁନୁଅପା କୌତୂହଳୀ ହୋଇ ଗୁରିଆଡ଼କୁ ଅନାଇ ପୁଣିଥରେ ପରୀକ୍ଷା କରି-ନେଲେ । କେଉଁଆଡ଼େ କିଛି ନ ଥିବା ଦେଖି କହିଲେ—"ଠିକ୍ ଅଛି, ଏଥର ଦୁଇଟିକୁ ଓଜନ କରାଯାଉ ।"

ଦାଦା ସଙ୍ଗେ ସଙ୍ଗେ ନିକିତି ବାକ୍‌ସ ଖୋଲି ଗୋଟିଏ ପାଖରେ ଓଜନ ହୋଇଥିବା ତୁଳା ଓ ଅନ୍ୟ ପାଖରେ ଓଜନ ହୋଇଥିବା ଲୁହାକୁ ଥୋଇଲେ । ତା'ପରେ ତରାଜୁଟିକୁ ଉଠାଇଲେ ।

କି ଆଶ୍ଚର୍ଯ୍ୟ, ଲୁହାଥିବା ବଟକରା ପାଖଟି ତଳକୁ ନଇଁ ଯାଉଛି । ଯେଉଁ ପାଖରେ ତୁଳା ଥିଲା ସେ ପାଖଟି ଉପରକୁ ଉଠି ଯାଇଛି । ଦିଶୁଛି ପାଞ୍ଚଗ୍ରାମ୍ ଓଜନର ଲୁହା ପାଞ୍ଚଗ୍ରାମ୍ ଓଜନର ତୁଳାଠାରୁ ଅଧିକ ଭାରି । ଛୁନୁଅପାଙ୍କ କାନ ଧରି ଟାଣି ନେଇ ଦାଦା ଦେଖାଇ ଦେଇ କହିଲେ, ଛୁନୁ, କହିଲ ଏଥର ତୁଳା ଅଧିକ ଭାରି ନା ଲୁହା ଅଧିକ ଭାରି ? ଆଖିରେ ଯାହା ଦେଖୁଛ କୁହ ।" ଦାଦା କହିଲେ, "ପାଞ୍ଚଗ୍ରାମ୍ ଓଜନର ଲୁହା ଯେମିତି ପାଞ୍ଚଗ୍ରାମ୍ ଓଜନର ତୁଳାଠାରୁ ଅଧିକ ଭାରି ହେଲା, ସେଇଭଳି ମହଣେ ଓଜନର ଲୁହା ମହଣେ ଓଜନର ତୁଳାଠାରୁ ଅଧିକ ଭାରି ହେବ ।

ଏଥର ମନକୁ ବିଶ୍ୱାସ ଆସିଲା ଛୁନୁ, ମହଣେ ଲୁହା ବେଶୀ ଭାରି ନା ମହଣେ ତୁଳା ବେଶୀ ଭାରି ।"




[ ସମାନ ଓଜନର ତୁଳା ଓ ଲୁହାକୁ ଓଜନ କଲାରୁ ଲୁହା ଅଧିକ ଭାରୀ ହେଉଛି ]

"ତା' ଅର୍ଥ ହେଉଛି ମଣ୍ଟୁ ଯାହା କହିଥିଲା, ତାହା ଠିକ୍, ତୁମେ ଯା' କହିଥିଲ ତାହା ଭୁଲ୍ । ଏଠି ମେଜିକ୍ ଫେଜିକ୍ କିଛି ନାହିଁ । ଏହା ଗୋଟିଏ ଖାଣ୍ଟି ନବେଲା ପରୀକ୍ଷା ।" ଦାଦା କହିଲେ ।

ଦେଖୁଁ, ଦେଖୁଁ ବୋଉ ପଚାରିଲା, "ଆରେ, ସତେ ତ, ଲୁହା ଥିବା ବଟଖରା ପାତଟି କ'ଣ ତଳକୁ ଦବିଗଲା ? ବାସ୍ତବିକ୍ ଏ କେମିତି ହେଲା ରମେଶ ?"

ଦାଦା କହିଲେ, "ଏ କିଛି ମେଜିକ୍ ନୁହଁ ନୂଆବୋଉ । ପ୍ରଥମେ ବଟଖରା ପାତରେ ଯେତେବେଳେ ଗୋଟିଏ ପାଖରେ ବଟଖରା ଥିଲା, ଆର ପାଖରେ ସମାନ ଓଜନର ତୁଳା ଥିଲା, ସେତେବେଳେ ଦୁଇଟିଯାକର ଓଜନ ଆମ ଆଖିକୁ ସମାନ ଦିଶୁଥିଲା । ସେତେବେଳେ ଏହି ତରାଜୁଟି ବଟଖରା ପାତସହିତ ପୂରାପୂରି ବାୟୁଶୂନ୍ୟ ସେହି କାଚ ବାକ୍ସ ଭିତରେ ଥିଲା । ମୁଁ ସେ ଦୁଇଟିକୁ ସମାନ ଓଜନର ନେଇଥିଲି ବାୟୁଶୂନ୍ୟ ଅବସ୍ଥାରେ । ଲୁହା ଖଣ୍ଡିକୁ ମଧ ଠିକ୍ ସେଇ ଅବସ୍ଥାରେ ଓଜନ କରାଯାଇଥିଲା । ସେହି କାଚ ବାକ୍ସରେ ଯେତେବେଳେ ବାୟୁ ନ ଥିଲା, ସେତେବେଳେ ମୁଁ ଦୁଇଟିର ସମାନ ଓଜନ ଦେଖାଇଥିଲି । ସେହି ବାକ୍ସ ଭିତରକୁ ଯେତେବେଳେ ବାୟୁ ଛାଡ଼ିଦେଲି, ବାୟୁର ଉତ୍ପ୍ଲାବନ ଶକ୍ତି ତୁଳା ଓ ଲୁହା ଉଭୟ ଉପରେ କାମ କଲା । ଏହି ଉତ୍ପ୍ଲାବନ ଶକ୍ତି ହେଉଛି କୌଣସି ପଦାର୍ଥର ଉପରକୁ ଠେଲି ଧରିବା ଶକ୍ତି । ତୁଳାର ଆକାର ଲୁହାର ଆକାର ତୁଳନାରେ ଯଥେଷ୍ଟ ଅଧିକ ଥିବାରୁ ଏହି ଉତ୍ପ୍ଲାବନ ଶକ୍ତି ତୁଳାକୁ ଅଧିକ ପରିମାଣରେ ଉପରକୁ ଠେଲି ଧରିଲା । ଫଳରେ ଲୁହା ଥିବା ଆରପାଖ ବଟଖରା ପାତଟି ତଳକୁ ଦବି ହୋଇଗଲା । ତୁମକୁ ଦିଶିଲା, ସମାନ ଓଜନର ଲୁହା ସମାନ ଓଜନର ତୁଳାଠାରୁ ଅଧିକ ଭାରି । ଅର୍ଥାତ୍ ମହଣେ ତୁଳାଠାରୁ ମହଣେ ଲୁହା ଅଧିକ ଭାରି । ଏ କିଛି ମେଜିକ୍ ନୁହେଁ ନୂଆବୋଉ, ଏ ହେଉଛି ଏକ ନିରୋଳା ବାସ୍ତବ ପରୀକ୍ଷା । ଚୁନୁ ବିଚାରି ମେଡ଼ିକେଲ କଲେଜ ଝିଅ, ପଦାର୍ଥ ବିଜ୍ଞାନ ଜାଣିବ କେଉଁଠୁ ? ମଣ୍ଟୁର ଖାଲି ଭୁଲ ଧରୁଛି ।"

"ଆଉ, ତୁମେ କ'ଣ କହୁଛ ରମେଶ, ତୁମେ ଆମକୁ ଏ ପରୀକ୍ଷା ଦେଖାଇ ସାରିଲେ ବି ଆମେ କହିବୁ; ମହଣେ ତୁଳାଠାରୁ ମହଣେ ଲୁହା ଅଧିକ ଭାରି ।"

"ତା' ତ କହୁନ ନୂଆବୋଉ । ତେବେ ଏତିକ ଜାଣି ରଖ; ଭୁଲ ଉତ୍ତର ବେଳେବେଳେ ଠିକ୍ ବୋଲି ପରୀକ୍ଷା କରି ଦେଖାଇ ଦିଆଯାଇପାରେ । ଅବଶ୍ୟ ଏ ପରୀକ୍ଷାଟା ଏକ ପ୍ରକାର ଜାଲିଯୁକ୍ତ ପରୀକ୍ଷା । ଗୋଟିଏ ଓଜନକୁ ବାୟୁଶୂନ୍ୟ ଅବସ୍ଥାରେ କରି ଅନ୍ୟଟିକୁ ବାୟୁପୂର୍ଣ୍ଣ ଅବସ୍ଥାରେ କଲାରୁ ଏମିତି ହେଲା । ଉଭୟେ ଯଦି ସାଧାରଣ ବାୟୁଯୁକ୍ତ ଅବସ୍ଥାରେ ଓଜନ କରାହୋଇଥାନ୍ତେ, ତେବେ ଦୁଇଟିଯାକ ସମାନ ଓଜନ ଦେଖାଇଥାନ୍ତେ ।

---